

## ଶ୍ରୀ ଗଙ୍ଗାଧର ମହାପାତ୍ର

ଶ୍ରୀ ଗଙ୍ଗାଧର ମହାପାତ୍ର ବିଗତ ୪୦ ବର୍ଷ ଧରି ଓଡ଼ିଶାର ସାଧାରଣ କ୍ଷେତ୍ରରେ ଜଣେ ଖ୍ୟାତନାମା ସମାଜସେବୀ, ବିଶିଷ୍ଟ ଆଇନଜ୍ଞ ଓ ଜନପ୍ରିୟ ବ୍ୟକ୍ତିଭାବେ ସୁପରିଚିତ । ତାଙ୍କର ସରଳ ଅହଂଭାବଶୂନ୍ୟ ବ୍ୟବହାର ଯୋଗୁଁ ସେ ସମସ୍ତଙ୍କର ଅକୁଣ୍ଠିତ ସ୍ନେହ ଓ ଶ୍ରଦ୍ଧାର ପାତ୍ର ହୋଇ ପାରିଛନ୍ତି ।

ଶ୍ରୀ ମହାପାତ୍ର ୧୯୧୬ ମସିହା ଜୁଲାଇ ମାସରେ ଜନ୍ମଗ୍ରହଣ କରିଥିଲେ । ସେ ପୁରୀ ଜିଲ୍ଲା ଅନ୍ତର୍ଗତ ବିଶ୍ୱନାଥପୁର ନିବାସୀ ସ୍ୱର୍ଗତ ଦାମୋଦର ମହାପାତ୍ରଙ୍କର ଜ୍ୟେଷ୍ଠ ପୁତ୍ର । ସେ ପିଲାଦିନରୁ ସମାଜ କଲ୍ୟାଣ କାର୍ଯ୍ୟଗୁଡ଼ିକରେ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ ଓ ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ଛାତ୍ର ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ୧୯୩୧ ମସିହାରେ ଅସହଯୋଗ ଆନ୍ଦୋଳନ ସମୟରେ ସେ ନିଜର କାର୍ଯ୍ୟକଳାପ ଯୋଗୁଁ ଗିରଫ ହୋଇ ପୁରୀ ଜିଲ୍ଲା ସ୍କୁଲରୁ ବହିଷ୍କୃତ ହୋଇଥିଲେ । ସେ ୧୯୪୦ ମସିହାରେ ନିଜର ଆଇନ ଶିକ୍ଷା ଶେଷ ହେବା ପର୍ଯ୍ୟନ୍ତ ନିଖିଳ ଓଡ଼ିଶା ଛାତ୍ର ସଂସଦର ସମ୍ପାଦକ ଭାବେ ନେତୃତ୍ୱ ନେଇଥିଲେ ।

ଶ୍ରୀ ମହାପାତ୍ର ୧୯୩୮ ଓ ୧୯୪୦ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟରୁ ଯଥାକ୍ରମେ ଅର୍ଥଶାସ୍ତ୍ରରେ ସ୍ନାତକୋତ୍ତର ଓ ଆଇନ ଡିଗ୍ରୀ ଲାଭ କରିଥିଲେ । ଏହି ସମୟ ମଧ୍ୟରେ ସେ ଛାତ୍ର ଆନ୍ଦୋଳନଗୁଡ଼ିକରେ ନିଜକୁ ବିଶେଷଭାବେ ସଂଶ୍ଳିଷ୍ଟ ରଖୁଥିଲେ ଓ ରାଜ୍ୟର ତତ୍‌କାଳୀନ ଐତିହାସିକ ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ୧୯୪୦-୪୧ ମସିହା ମଧ୍ୟରେ ସେ ନିଜର ଜାତୀୟ କାର୍ଯ୍ୟକଳାପପାଇଁ ଦୁଇଥର କାରାବରଣ କରିଥିଲେ ।

ଶ୍ରୀ ମହାପାତ୍ର ୧୯୪୧ ମସିହାରେ ପୁରୀଠାରେ ଆଇନ ବ୍ୟବସାୟରେ ଯୋଗଦେଇ ଯଥାଶୀଘ୍ର ନିଜକୁ ଜଣେ ବିଶିଷ୍ଟ ଆଇନଜ୍ଞରୂପେ ପ୍ରତିଷ୍ଠିତ କରି ପାରିଥିଲେ । ସେ ୧୯୪୯ ମସିହାରେ ସରକାରୀ ଓକିଲ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ୧୯୪୮ ଓ ୧୯୫୧ ମସିହାରେ ଯଥାକ୍ରମେ ପୁରୀ ମ୍ୟୁନିସିପାଲିଟିର ଉପାଧ୍ୟକ୍ଷ ଓ ଅଧ୍ୟକ୍ଷରୂପେ ନିର୍ବାଚିତ ହୋଇଥିଲେ । ସେ ୧୯୬୧ ମସିହାରେ ପୁରୀ ଜିଲ୍ଲା କଂଗ୍ରେସ କମିଟିର ସଭାପତି ଭାବେ ନିର୍ବାଚିତ ହୋଇ ୧୯୬୮ ମସିହା ପର୍ଯ୍ୟନ୍ତ ଉକ୍ତ ଦାୟିତ୍ୱରେ ରହିଥିଲେ । ସେ ୧୯୬୧ରୁ ୧୯୬୯ ମସିହା ପର୍ଯ୍ୟନ୍ତ ପ୍ରଦେଶ କଂଗ୍ରେସ କମିଟି ଓ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟ ରହିଥିଲେ ।



ପର୍ଯ୍ୟଟନ ଓ ସଂସ୍କୃତିକ ବ୍ୟାପାର ମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ର, ୧୯୭୫ ଅକ୍ଟୋବର ୧୦ ତାରିଖ ଦିନ ବଲାଙ୍ଗୀରଠାରେ ଟୁରିଷ୍ଟ ବୋର ଉଦ୍‌ଘାଟନ କରୁଛନ୍ତି ।



ବାରିପଦାସ୍ଥ ଭଞ୍ଜ କଳାକେନ୍ଦ୍ର ତରଫରୁ ଡକ୍ଟର ଜେ: ପି: ମିଶ୍ର, ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠି ପାଇଁ ଲୋକସମ୍ପର୍କ ନିର୍ଦ୍ଦେଶକ ଶ୍ରୀ ଏ. ଏନ୍. ତ୍ରିପାଠୀଙ୍କ ହସ୍ତରେ ୫୧୦୧ ଟଙ୍କାର ଏକ ଚେକ୍ ପ୍ରଦାନ କରୁଛନ୍ତି ।



ରାଜଧାନୀ ସାହିତ୍ୟ ସଂସଦର ତୃତୀୟ ବାର୍ଷିକ ଉତ୍ସବରେ କଳା ପ୍ରଦର୍ଶନୀ ଉଦ୍‌ଘାଟନ କରୁଛନ୍ତି ସଂସ୍କୃତ ବିଭାଗ ଉପମନ୍ତ୍ରୀ ଶ୍ରୀ ମତ୍ଲୁବ୍ ଅଲ୍ଲି ।



ସ୍ୱର୍ଗତ ଅପନା ଗଉଡ଼ଙ୍କ ବିଧବା ପତ୍ନୀଙ୍କୁ ଗଞ୍ଜାମ କଲ୍ଲିପାଲ ଗ୍ରୁପ୍ ଇନସୁରାନ୍ସ ବାବଦ ୫୩,୦୦୦ଟଙ୍କାର ଏକ ଚେକ୍ ପ୍ରଦାନ କରୁଛନ୍ତି ।

ଅନ୍ତିମ ଶଯ୍ୟାରେ ସ୍ୱାମୀ ବିଚିତ୍ରାନନ୍ଦ ଦାସ



ଆବିର୍ଭାବ—୧୮୮୫ ମଇ ୧୩ ତାରିଖ ତିରୋହିତ—୧୯୭୫ ଅକ୍ଟୋବର ୬ ତାରିଖ



## ଶ୍ରୀ ଗଙ୍ଗାଧର ମହାପାତ୍ର

ଶ୍ରୀ ଗଙ୍ଗାଧର ମହାପାତ୍ର ବିଗତ ୪୦ ବର୍ଷ ଧରି ଓଡ଼ିଶାର ସାଧାରଣ କ୍ଷେତ୍ରରେ ଜଣେ ଖ୍ୟାତନାମା ସମାଜସେବୀ, ବିଶିଷ୍ଟ ଆଇନଜ୍ଞ ଓ ଜନପ୍ରିୟ ବ୍ୟକ୍ତିଭାବେ ସୁପରିଚିତ । ତାଙ୍କର ସରଳ ଅହଂଭାବଶୂନ୍ୟ ବ୍ୟବହାର ଯୋଗୁଁ ସେ ସମସ୍ତଙ୍କର ଅକୁଣ୍ଠିତ ସ୍ନେହ ଓ ଶ୍ରଦ୍ଧାର ପାତ୍ର ହୋଇ ପାରିଛନ୍ତି ।

ଶ୍ରୀ ମହାପାତ୍ର ୧୯୧୫ ମସିହା ଜୁଲାଇ ମାସରେ ଜନ୍ମଗ୍ରହଣ କରିଥିଲେ । ସେ ପୁରୀ ଜିଲ୍ଲା ଅନ୍ତର୍ଗତ ବିଶ୍ୱନାଥପୁର ନିବାସୀ ସ୍ୱର୍ଗତ ଦାମୋଦର ମହାପାତ୍ରଙ୍କର ଜ୍ୟେଷ୍ଠ ପୁତ୍ର । ସେ ପିଲାଦିନରୁ ସମାଜ କଲ୍ୟାଣ କାର୍ଯ୍ୟଗୁଡ଼ିକରେ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ ଓ ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ଛାତ୍ର ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ୧୯୩୧ ମସିହାରେ ଅସହଯୋଗ ଆନ୍ଦୋଳନ ସମୟରେ ସେ ନିଜର କାର୍ଯ୍ୟକଳାପ ଯୋଗୁଁ ଗିରଫ ହୋଇ ପୁରୀ ଜିଲ୍ଲା ସ୍କୁଲରୁ ବହିଷ୍କୃତ ହୋଇଥିଲେ । ସେ ୧୯୪୦ ମସିହାରେ ନିଜର ଆଇନ ଶିକ୍ଷା ଶେଷ ହେବା ପର୍ଯ୍ୟନ୍ତ ନିଖିଳ ଓଡ଼ିଶା ଛାତ୍ର ସଂଘର ସମ୍ପାଦକ ଭାବେ ନେତୃତ୍ୱ ନେଇଥିଲେ ।

ଶ୍ରୀ ମହାପାତ୍ର ୧୯୩୮ ଓ ୧୯୪୦ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟରୁ ଯଥାକ୍ରମେ ଅର୍ଥନୀତିରେ ସ୍ନାତକୋତ୍ତର ଓ ଆଇନ ଡିଗ୍ରୀ ଲାଭ କରିଥିଲେ । ଏହି ସମୟ ମଧ୍ୟରେ ସେ ଛାତ୍ର ଆନ୍ଦୋଳନ-ଗୁଡ଼ିକରେ ନିଜକୁ ବିଶେଷଭାବେ ସଂଶ୍ଳିଷ୍ଟ ରଖୁଥିଲେ ଓ ରାଜ୍ୟର ତତ୍‌କାଳୀନ ଐତିହାସିକ ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ୧୯୪୦-୪୧ ମସିହା ମଧ୍ୟରେ ସେ ନିଜର ଜାତୀୟ କାର୍ଯ୍ୟ-କଳାପପାଇଁ ଦୁଇଥର କାରାବରଣ କରିଥିଲେ ।

ଶ୍ରୀ ମହାପାତ୍ର ୧୯୪୧ ମସିହାରେ ପୁରୀଠାରେ ଆଇନ ବ୍ୟବସାୟରେ ଯୋଗଦେଇ ଯଥାଶୀଘ୍ର ନିଜକୁ ଜଣେ ବିଶିଷ୍ଟ ଆଇନଜ୍ଞରୂପେ ପ୍ରତିଷ୍ଠିତ କରି ପାରିଥିଲେ । ସେ ୧୯୪୨ ମସିହାରେ ସରକାରୀ ଓକିଲ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ୧୯୪୮ ଓ ୧୯୫୧ ମସିହାରେ ଯଥାକ୍ରମେ ପୁରୀ ମ୍ୟୁନିସିପାଲିଟିର ଉପାଧ୍ୟକ୍ଷ ଓ ଅଧ୍ୟକ୍ଷରୂପେ ନିର୍ବାଚିତ ହୋଇଥିଲେ । ସେ ୧୯୬୧ ମସିହାରେ ପୁରୀ ଜିଲ୍ଲା କଂଗ୍ରେସ କମିଟିର ସଭାପତି ଭାବେ ନିର୍ବାଚିତ ହୋଇ ୧୯୬୮ ମସିହା ପର୍ଯ୍ୟନ୍ତ ଉକ୍ତ ଦାୟିତ୍ୱରେ ରହିଥିଲେ । ସେ ୧୯୬୧ରୁ ୧୯୬୨ ମସିହା ପର୍ଯ୍ୟନ୍ତ ପ୍ରଦେଶ କଂଗ୍ରେସ କମିଟି ଓ ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟ ରହିଥିଲେ ।

ସେ ଗୁରୁତ୍ୱପୂର୍ଣ୍ଣ ମାମଲାଗୁଡ଼ିକରେ ରାଜ୍ୟ ସରକାରଙ୍କ ତରଫରୁ ସ୍ୱତନ୍ତ୍ର ପ୍ରସିକ୍ୟୁଟର ଭାବେ କାର୍ଯ୍ୟ ସମ୍ପାଦନ କରିଥିଲେ । ସେ ୧୯୭୦ ମସିହାରେ ସରଜୁ ପ୍ରସାଦ କମିଶନରେ ରାଜ୍ୟ ସରକାରଙ୍କ ପରାମର୍ଶଦାତାରୂପେ ନିଯୁକ୍ତି ପାଇଥିଲେ । ଶ୍ରୀ ମହାପାତ୍ର ୧୯୭୨ ଓ ୧୯୭୩ ମସିହାରେ ସୁପ୍ରି ଆଇନଜୀବୀ ସଂଘର ସମ୍ପାଦକ ରହିଥିଲେ ।

ଶ୍ରୀ ମହାପାତ୍ର ୧୯୭୭ ମସିହାରେ ଚତ୍ୟାବାସା ନିର୍ବାଚନ ମଣ୍ଡଳୀରୁ ପ୍ରଥମଥର ପାଇଁ ରାଜ୍ୟ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ସେ ୧୯୭୦ ମସିହାରେ ରାଜ୍ୟ ବିଧାନ ସଭାରେ ବିରୋଧୀ ଦଳର ନେତା ହୋଇଥିଲେ । ସେ ୧୯୭୪ ମସିହାରେ ତାଙ୍କର ପୂର୍ବ ନିର୍ବାଚନ ମଣ୍ଡଳୀରୁ ରାଜ୍ୟ ବିଧାନ ସଭାକୁ ପୁନଃ ନିର୍ବାଚିତ ହୋଇଥିଲେ । ସେ ୧୯୭୦ ଓ ୧୯୭୪ ମସିହାରେ ଯଥାକ୍ରମେ ରାଜ୍ୟ ବିଧାନ ସଭାର ପବ୍ଲିକ୍ ଆକାଉଣ୍ଟ କମିଟି ଓ ଏଷ୍ଟିମେଟ୍ କମିଟିର ଅଧ୍ୟକ୍ଷ ଭାବେ କାର୍ଯ୍ୟ ନିର୍ବାହ କରିଥିଲେ । ସେ ୧୯୭୨ରୁ ୧୯୭୪ ମସିହା ପର୍ଯ୍ୟନ୍ତ ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ର ସଭାପତି ରହିଥିଲେ ।

ଶ୍ରୀ ମହାପାତ୍ର ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟି ଓ ରାଜ୍ୟ ସମନ୍ୱୟ କମିଟିର ସଦସ୍ୟ ଅଛନ୍ତି । ସେ ବର୍ତ୍ତମାନ ସୁଦ୍ଧା ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ପ୍ରୋ-ଚାନସେଲର ଭାବେ କାର୍ଯ୍ୟ କରୁଛନ୍ତି । ଏତଦ୍‌ବ୍ୟତୀତ ସେ ରାଜ୍ୟର ବିଭିନ୍ନ ଶିକ୍ଷା ତଥା ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକ ସହିତ ମଧ୍ୟ ସଂଶ୍ଳିଷ୍ଟ ରହିଛନ୍ତି ।

ଶ୍ରୀ ମହାପାତ୍ର ସମ୍ପ୍ରତି ଓଡ଼ିଶା ମନ୍ତ୍ରୀମଣ୍ଡଳରେ ଜଣେ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀରୂପେ ଖାଦ୍ୟ ଓ ଯୋଗାଣ, ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ବିଭାଗର ଦାୟିତ୍ୱ ଗ୍ରହଣ କରିଛନ୍ତି ।

# ଉତ୍କଳ ପ୍ରସଙ୍ଗ

୧୯୭୫ : ନଭେମ୍ବର, କାର୍ତ୍ତିକ, ୧୮୯୭ ଶକାବ୍ଦ
୩୨ଶ ଭାଗ : ୪ର୍ଥ ସଂଖ୍ୟା



***

ମୁଖ୍ୟ ସମ୍ପାଦକ:
ଶ୍ରୀ ଅଓଧ ନାରାୟଣ ତିୱାରୀ
ଆଇ. ଏ. ଏସ୍.,
ଲୋକ ସମ୍ପର୍କ ନିର୍ଦ୍ଦେଶକ

ସମ୍ପାଦକ:
ମହାପାତ୍ର ନୀଳମଣି ସାହୁ

ସହକାରୀ ସମ୍ପାଦକ:
ଶ୍ରୀ ବ୍ରଜମୋହନ ପଟ୍ଟନାୟକ
ଶ୍ରୀ କିଶୋର ଚନ୍ଦ୍ର ବେହେରା

ପ୍ରଚ୍ଛଦପଟ:
ଶ୍ରୀ ଅସିତ୍ ମୁଖର୍ଜୀ

ମୁଦ୍ରଣ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ
ବାର୍ଷିକ ଦେୟ—ଟ୧୦·୦୦
ପ୍ରତିଖଣ୍ଡ—ଟ୧·୦୦

## ସୂଚୀପତ୍ର

### ପ୍ରସଙ୍ଗ କ୍ରମେ :



### ସମାଜପାଇଁ ଜୀବନପାଇଁ :



### ସାହିତ୍ୟ ଓ ସଂସ୍କୃତି :



### ମହିଳା ମହଲ :

## ଯୁବ ଜଗତ :



## କିଶୋର ଜଗତ :



## ଆଜିର ଓଡ଼ିଶା .




# କ୍ଷୁଧାର୍ତ୍ତ ପୃଥିବୀ ଓ – କୃଷିଲାଗି ଏକ ଚ୍ୟାଲେଞ୍ଜ

ଖାଦ୍ୟ ସଙ୍କଟ କେବଳ ଆମ ଦେଶରେ ଘଟି ନାହିଁ—୧୯୭୩ ମସିହାଠାରୁ ସାରା ପୃଥିବୀରେ ଦେଖା ଦେଇଛି ଖାଦ୍ୟ ସଙ୍କଟର ବିଭୀଷିକା । ୧୯୭୩ରେ ହଠାତ୍‌ବରୁ ଦେଖା ଗଲା ଯେ ବିଶ୍ୱର ସାମଗ୍ରିକ ଖାଦ୍ୟ ଉତ୍ପାଦନ ଦୁଇ ଶତାଂଶ ଏବଂ ମୁଣ୍ଡପିଛା ଖାଦ୍ୟ ସରବରାହ ଚାରି ଶତାଂଶ କମିଗଲାଣି । କାରଣ ସ୍ୱରୂପ ଦେଖାଗଲା ଯେ, ସମସ୍ୟାନୁଯାୟୀ କୃଷିର ଅଭାବ, ନାନାବିଧ ପ୍ରାକୃତିକ ବିପର୍ଯ୍ୟୟ, ବିଶେଷରୂପେ ଭାରତ, ଆଫ୍ରିକା, ଅଷ୍ଟ୍ରେଲିଆ ଓ ସୋଭିଏତ୍ ଦେଶରେ ଅସ୍ୱାଭାବିକ ପାଗ, ଖାଦ୍ୟଦ୍ରବ୍ୟ ଉତ୍ପାଦନରେ ବିଶେଷ ବାଧା ସୃଷ୍ଟି କରିଛି । ଅନ୍ୟ ପକ୍ଷରେ ୧୯୭୨-୭୩ ମସିହାରେ ପୁଣି ଖାଦ୍ୟ ସାମଗ୍ରୀ ଓ କୃଷି ସାମଗ୍ରୀର ଚାହିଦା ଅତ୍ୟଧିକ ବଢ଼ିଗଲା । ଖାଦ୍ୟ କ୍ଷେତ୍ରରେ ଚାହିଦା ଏବଂ ଖାଦ୍ୟ ଯୋଗାଣ ମଧ୍ୟରେ ଭାରସାମ୍ୟର ଅଭାବ ବର୍ତ୍ତମାନ ବିଶ୍ୱର ସର୍ବତ୍ରହିଁ ପରିଲକ୍ଷିତ ହେଉଛି । କୃଷି କ୍ଷେତ୍ରରେ ଏହା ଉଠିଲାଣି ବିରାଟ ଚ୍ୟାଲେଂଜ୍ । କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଫୁଡ୍ ଟାସ୍କ ଫୋର୍ସ ଦ୍ୱାରା ପତ୍ରିକା ପ୍ରକାଶିତ "ଏକ କ୍ଷୁଧାର୍ତ୍ତ ପୃଥିବୀ" ଏବଂ "କୃଷି ଲାଗି ଏକ ଚ୍ୟାଲେଂଜ୍" ଦୁଇଟି ଆଲୋଚନା ଗ୍ରନ୍ଥରେ ଏହି ସମସ୍ୟା ଉପରେ ତଥ୍ୟ ଆଲୋକପାତ କରାଯାଇଛି ।

ଆମେ ଯଦି କେବଳ ଆମର ଦେଶ ଭଳି ନ ଦେଖି, ସମସ୍ତ ବିଶ୍ୱର ପରିପ୍ରେକ୍ଷୀରେ ବିଚାର କରିବା ତେବେ ଦେଖିବା, ଖାଦ୍ୟଦ୍ରବ୍ୟର ଚାହିଦା ମୁଖ୍ୟତଃ ନିର୍ଭର କରେ ଜନସଂଖ୍ୟା ଏବଂ ମୁଣ୍ଡପିଛା ଆୟର ପରିମାଣ ଉପରେ । ଜନସଂଖ୍ୟା ପୁଣି ନିର୍ଭର କରେ ଜନ୍ମହାର ଓ ମୃତ୍ୟୁହାର ଉପରେ । ପୁଣି ଜନ୍ମହାର ଓ ମୃତ୍ୟୁହାର ନିର୍ଭର କରୁଛି ଦେଶରେ ରୋଗର ପ୍ରାଦୁର୍ଭାବ, ଖାଦ୍ୟର ପରିମାଣ ଓ ଖାଦ୍ୟର ଗୁଣାଗୁଣ ଉପରେ । ସେହିପରି ବିଶ୍ୱରେ ଖାଦ୍ୟର ଯୋଗାଣ ନିର୍ଭର କରେ ଫସଲର ଉତ୍ପାଦନ, ବିଭିନ୍ନ ପ୍ରାଣୀଜାତ ଖାଦ୍ୟ (ମାଛ, ମାଂସ, ଅଣ୍ଡା, ଦୁଧ, ସାମୁଦ୍ରିକ ମାଛ), ବିଭିନ୍ନ ଜଙ୍ଗଲରୁ ଉତ୍ପନ୍ନ ଖାଦ୍ୟଦ୍ରବ୍ୟ, ଫଳ-ଫୁଲ, ପନିପରିବା ଆଦିର ସରବରାହ ଉପରେ । ଏଣୁ ବିଶ୍ୱରେ ବିଭିନ୍ନ ସ୍ଥାନର ଖାଦ୍ୟ ଦ୍ରବ୍ୟାଦିର ଚାହିଦା ଓ ଯୋଗାଣ ଏକ ପ୍ରକାର ନୁହେଁ । ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଖାଦ୍ୟଦ୍ରବ୍ୟ ସ୍ଥାନାନ୍ତରିତ ହୋଇପାରେ । ଖାଦ୍ୟାଭାବ ପଡିଥିବା ଇଲାକାକୁ ସାହାଯ୍ୟ କରିବା ଲାଗି ବଳକା ରାଜ୍ୟମାନେ ଆଗେଇ ଆସି ପାରନ୍ତି ଏବଂ ଏହି ପ୍ରକାରେ ସାମାଜିକ ଭାରସାମ୍ୟ ବଜାୟ ରଖିବାକୁ ଚେଷ୍ଟା ଚାଲିପାରେ ।

କିନ୍ତୁ ବର୍ତ୍ତମାନ ଏହି ଖାଦ୍ୟ ସଙ୍କଟ ହୋଇଛି ବିଶ୍ୱବ୍ୟାପୀ । ଏହା କେବଳ ଆମ ଦେଶ ବା ଆଉ ଦେଶର ସଙ୍କଟ ନୁହେଁ । ଖାଦ୍ୟଦ୍ରବ୍ୟର ତ ଅଭାବ ପଡିଛି-ତା ସଙ୍ଗେ ସଙ୍ଗେ ବି ପଡିଛି ପୁଷ୍ଟିକର ଖାଦ୍ୟର ଅଭାବ । ସମଗ୍ର ବିଶ୍ୱର ପରିପ୍ରେକ୍ଷୀରେ ବର୍ତ୍ତମାନ ଜନସଂଖ୍ୟା ଦୁଇଶତାଂଶ ହାରରେ ବଢିଯାଉଛି । ୧୯୩୦ରୁ ୧୯୭୦ ମସିହା ମଧ୍ୟରେ ଜନସଂଖ୍ୟା ବୃଦ୍ଧିର ହାର ବିଶେଷଜ୍ଞମାନଙ୍କ ଗଣନାନୁସାରେ ଏକ ଶତାଂଶରୁ ପ୍ରାୟ ଦୁଇଶତାଂଶର ପାଖାପାଖି (୧.୮ ଶତାଂଶ) ବଢି ଯାଇଥିଲା । ପୃଥିବୀର ଜନସଂଖ୍ୟା ସମସ୍ୟା ସବୁଠାରୁ ବେଶି ପ୍ରକଟିତ ହୋଇଛି ଲାଟିନ୍ ଆମେରିକା, ଏସିଆ ଏବଂ ଆଫ୍ରିକାରେ । ସମଗ୍ର ବିଶ୍ୱର ମୋଟ ଜନସଂଖ୍ୟାର ୭୫ ଶତାଂଶ ବର୍ତ୍ତମାନ ଏହି ତିନୋଟି ମହାଦେଶରେ । କେବଳ ଭାରତ ଓ ଚୀନର ମୋଟ ଲୋକସଂଖ୍ୟା ହେଲା ସାରା ପୃଥିବୀ ଲୋକ ସଂଖ୍ୟାର ଏକ ତୃତୀୟାଂଶ । ଭାରତର ବର୍ତ୍ତମାନ ଲୋକ ସଂଖ୍ୟା (୧୯୭୧ ଗଣନାନୁସାରେ) ଷାଠିଏ କୋଟି । ଚୀନର ଲୋକ ସଂଖ୍ୟା ହେଲା ୮୦ କୋଟିରୁ ବେଶି । ଏସିଆର ଦେଶ ଗୁଡିକ ମଧ୍ୟରେ ଲୋକସଂଖ୍ୟା ବୃଦ୍ଧିର ହାର ସବୁଠାରୁ କମ୍ ହୋଇଛି-ଜାପାନରେ (୧.୨ ଶତାଂଶ) । ଯେଉଁ ହାରରେ ବିଶ୍ୱର ଜନସଂଖ୍ୟା ବଢିଛି, ସେଥିରେ ଭବିଷ୍ୟତରେ ଖାଦ୍ୟ ସାମଗ୍ରୀର ଚାହିଦା ଯେ ଆହୁରି ଅନେକ ବଢିଯିବ-ଏବଂ ଚାହିଦାନୁସାରୀ ଯୋଗାଣର ପରିମାଣ ବେଶ କମି ଯାଇପାରେ, ସେ ସମ୍ବନ୍ଧେ ଖାଦ୍ୟ ପରିମାଣ ବିଶେଷଜ୍ଞମାନେ ଖୁବ୍ ଶଙ୍କିତ ହୋଇ ପଡିଛନ୍ତି । କିନ୍ତୁ ଯଦି ଠିକ୍ ସମୟରେ କୃଷି ଉନ୍ନୟନ ନିମିତ୍ତ ପ୍ରୟୋଜନୀୟ ବ୍ୟବସ୍ଥା ଗ୍ରହଣ କରାଯାଏ ତେବେ ଏ ସଙ୍କଟକୁ କାଟି ଦେଇ ହେବ ।

ପୃଥିବୀର ଖାଦ୍ୟ ସାମଗ୍ରୀ ଭିତରେ ପ୍ରଧାନ ହେଲା— ଚାଉଳ, ଗହମ, ମକ୍କା, ଚଣା, ସୋୟାବିନ୍, (ଚିନା-ବାଦାମ) ତେଲବୀଜ, ଆଳୁ, ଫଳ, ଡାଲି, ପରିବା ଆଦି । ଚାଉଳର ଉତ୍ପାଦନ ଏସିଆରେ ବେଶି । ୧୯୭୦ରେ ଚାଉଳର ଉତ୍ପାଦନ ହୋଇଥିଲା—୩୦୮ ମିଲିଅନ୍ ମେଟ୍ରିକ୍ ଟନ୍ ଏବଂ ଅନୁମାନ କରାଯାଉଛି ୧୯୮୫ ବେଳକୁ ଏହାର ଉତ୍ପାଦନ ପରିମାଣ ୪୪୪ ମିଲିଅନ୍ ମେଟ୍ରିକ୍ ଟନ୍ ହୋଇପାରେ । ଗହମର ଉତ୍ପାଦନ ୧୯୭୦ରେ ୩୩୩ ମିଲିଅନ ମେଟ୍ରିକ୍ ଟନ୍‌ରୁ ୧୯୮୫ରେ ୪୭୦ ମିଲିଅନ୍ ମେଟ୍ରିକ୍ ଟନ୍ ହେବ ବୋଲି ଅନୁମିତ ହେଉଛି । ସେହିପରି ଚଣା ଓ ମକ୍କାର ଉତ୍ପାଦନ ପରିମାଣ ୧୯୭୦ରେ ଥିଲା ଯଥାକ୍ରମେ ୫୮୧ ମିଲିଅନ୍ ମେଟ୍ରିକ୍ ଟନ୍ ଏବଂ ୨୦୬ ମିଲିଅନ୍ ମେଟ୍ରିକ୍ ଟନ୍ ୧୯୮୫ ବେଳକୁ ଏ ଦୁଇଟିର ଉତ୍ପାଦନ ଯଥାକ୍ରମେ ୮୫୨ ଏବଂ ୪୨୧ ମିଲିଅନ୍ ମେଟ୍ରିକ୍ ଟନ୍ ହୋଇପାରେ । ପୃଥିବୀରେ ଆବାଦୀ ଜମିର ମୋଟ ୪୨ ଶତାଂଶ ୧୯୭୦ରେ ଉତ୍ପାଦନରେ ଲାଗିଥିଲା । ୧୯୮୫ରେ ଫସଲ ଉତ୍ପାଦନ ଲାଗି ଆବାଦୀ ଜମିର ପରିମାଣ ଆହୁରି ବଢିବ । ତା' ସତ୍ତ୍ୱେ ବି ୧୯୮୫ରେ କ'ଣ ପୃଥିବୀର ଜନସାଧାରଣଙ୍କ ଖାଦ୍ୟର ଅଭାବ ମେଣ୍ଟି ପାରିବ ? ଭବି-ଷ୍ୟତରେ କୃଷିର ଉତ୍ପାଦନ କେତେ ବଢି ପାରିବ ତାହା ବହୁ ଅଂଶରେ ନିର୍ଭର କରେ ବିଶ୍ୱର ପ୍ରାକୃତିକ ଆବହାୱା ଉପରେ ଏବଂ ଉତ୍ପାଦନ ନିମିତ୍ତ ପ୍ରୟୋଜନୀୟ ବିଭିନ୍ନ ଉପାଦାନର ଯଥୋପଯୁକ୍ତ ସରବରାହ ଉପରେ । କୃଷି କ୍ଷେତ୍ରରେ ଉତ୍ପାଦନ ବଢିବା ନିମିତ୍ତ ଫର୍ଟିଲାଇଜର କଥା ମଧ୍ୟ ବିବେଚନା କରାଯାଉ । ୧୯୭୦ ଲୁଦ୍ରରେ ଫର୍ଟିଲାଇଜର ବ୍ୟବହାର ହୋଇଥିଲା ୬୮ ମିଲିଅନ୍ ମେଟ୍ରିକ୍ ଟନ୍ । କୋଡ଼ିଏ ବର୍ଷରେ ବାଣିଜ୍ୟିକ ଭିତ୍ତିରେ ଜମିରେ ଫର୍ଟିଲାଇଜରର ବ୍ୟବହାର ପାଞ୍ଚଗୁଣ ବଢି ଯାଇଛି । କିନ୍ତୁ ଭବିଷ୍ୟତରେ ନାଇଟ୍ରୋଜେନ୍‌ର ସରବରାହ କେତେ ବଢିବ ସେ ସମ୍ପର୍କରେ ସନ୍ଦେହ ଦେଖା ଦେଇଛି । ଯଦି ଉପଯୁକ୍ତ ପରିମାଣରେ ଫର୍ଟିଲାଇଜରର ସରବରାହ ନ ବଢେ, ତେବେ ବିଶ୍ୱରେ ଖାଦ୍ୟ ସଙ୍କଟ ଆହୁରି ଘନୀଭୂତ ହେବାର ସମ୍ଭାବନା । ସଂଘର ଖାଦ୍ୟ ଓ କୃଷି ସଂସ୍ଥାର ପ୍ରତିବେଦନରେ ଦେଖାଯାଏ ଯେ ବିଶ୍ୱର ଖାଦ୍ୟ ସାମଗ୍ରୀର ଯାହା ମୋଟ ଉତ୍ପାଦନ ହୋଇ ପାରନ୍ତା ତା'ର ଏକ ତୃତୀୟାଂଶ କୀଟ, ପୋକ, ମୂଷା ଓ ବୃକ୍ଷଗଛର ରୋଗ ଯୋଗୁଁ ନଷ୍ଟ ହୋଇଯାଏ ।

ଏହି ଧରଣର ଫସଲ ନଷ୍ଟ ହେବାର ବିରୁଦ୍ଧରେ ଉପଯୁକ୍ତ ବ୍ୟବସ୍ଥା ଗ୍ରହଣ କରାନଗଲେ, ଖାଦ୍ୟଶସ୍ୟର ଉତ୍ପାଦନ ଯେତେ ବଢ଼ିବ ବୋଲି ଆମେ ଆଶା କରୁଛୁ ତାହା ଅପେକ୍ଷା ଅନେକ କମ୍ ବଢ଼ିବ । ମାଂସ, ଦୁଧ ଓ ଅଣ୍ଡାର ଉତ୍ପାଦନ ଆମ ଦେଶରେ ନବଢ଼ି ଅଳ୍ପେ ବ ସ୍ଥଳରେ ବଢ଼ି ଯାଉଛି । କିନ୍ତୁ ସମସ୍ୟା ହେଉଛି— ବର୍ତ୍ତମାନ ଶତାବ୍ଦୀର ଶେଷରେ ପୃଥିବୀର ସାମଗ୍ରିକ ଖାଦ୍ୟ ଚାହିଦା ମେଣ୍ଟାଇବା ସମ୍ଭବ ହେବ କିନା !!

କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଫୁଡ ଟାସ୍କ ଫୋର୍ସ ଯେଉଁ ସମୀକ୍ଷା ଚଳାଇଛନ୍ତି, ସେଥିରେ କୁହା ଯାଇଛି ବିଶ୍ୱର କ୍ଷୁଧାର୍ତ୍ତ ଜନସଂଖ୍ୟାର ସମସ୍ୟା ମୁକାବିଲା କରିବା କ୍ଷେତ୍ରରେ କୃଷିର ଉନ୍ନୟନ ଏକ ବିରାଟ ଚ୍ୟାଲେଂଜର ସମ୍ମୁଖୀନ ହୋଇଛି । ସାମଗ୍ରିକଭାବେ କୃଷିର ଉନ୍ନୟନ ବର୍ତ୍ତମାନ ସବୁଠାରୁ ଜରୁରୀ-ତା' କେବଳ ଉନ୍ନତକାମୀ ଦେଶଗୁଡ଼ିକ ପାଇଁ ନୁହେଁ—ଉନ୍ନତ ଦେଶଗୁଡ଼ିକ ଲାଗି ମଧ୍ୟ ଭୂମିର ପୁନର୍ବାଣ୍ଟନ, ଭୂମି ସ୍ୱତ୍ୱ ପ୍ରତିରୋଧ, ଭୂମି ବଣ୍ଟନ, ଛୋଟ ଛୋଟ ଖମାରଗୁଡ଼ିକର ଅର୍ଥନୈତିକ ଆୟତନ (Economic Size) ବଢ଼ାଇବା, ଫର୍ଟିଲାଇଜରର ଉତ୍ପାଦନ ବୃଦ୍ଧି, ଭଲ ବିହନ ସରବରାହ, ଜଳସେଚନର ବ୍ୟାପକ ବ୍ୟବସ୍ଥା, କୀଟନାଶକ ଔଷଧର ଉତ୍ପାଦନ ଓ ଯଥାଯଥ ବ୍ୟବହାର, ସମବାୟ ଭିତ୍ତିରେ କୃଷିର ଉନ୍ନୟନ, କୃଷି ପଣ୍ୟ ବିକ୍ରୟକରଣର ସୁଷ୍ଠୁ ବ୍ୟବସ୍ଥା, ଯୋଗାଯୋଗ ବ୍ୟବସ୍ଥାର ଉନ୍ନୟନ, କୃଷି କ୍ଷେତ୍ରରେ ବିନିଯୋଗ ବୃଦ୍ଧି ବ୍ୟବସ୍ଥା ଗ୍ରହଣର ପ୍ରୟୋଜନତା ଅତ୍ୟନ୍ତ ରହିଛି । ତା'ଛଡ଼ା ବଡ଼ ପ୍ରୟୋଜନ ହେଲା ଉନ୍ନତର ଉତ୍ପାଦନ ପଦ୍ଧତି ପ୍ରୟୋଗ ନିମିତ୍ତ ବ୍ୟାପକ କୃଷି ଗବେଷଣା ଓ ଶିକ୍ଷାର ବିସ୍ତାର ଏବଂ କୃଷିକ୍ଷେତ୍ରରେ ନିଯୁକ୍ତ କର୍ମୀମାନଙ୍କର ବ୍ୟାପକ ପ୍ରଶିକ୍ଷଣ ବ୍ୟବସ୍ଥା । ପୃଥିବୀରେ ୧୯୮୫ ମସିହା ମଧ୍ୟରେ କୃଷିର ଯାହା ଉନ୍ନତି ହେବ ସେଥିରେ ସାମଗ୍ରିକଭାବେ ଚାହିଦା ଓ ଯୋଗାଣର ଭାରସାମ୍ୟ ବଜାୟ ରଖିବା ସମ୍ଭବ ହେବ ବୋଲି ଉକ୍ତ ସମୀକ୍ଷାରେ ଆଶା ପ୍ରକାଶ କରାଯାଇଛି । କିନ୍ତୁ ସମସ୍ୟାର ସୃଷ୍ଟି ହେବ ଆଞ୍ଚଳିକ ଭାରସାମ୍ୟ ବଜାୟ ରଖିବା କ୍ଷେତ୍ରରେ । ଅନଗ୍ରସର ଦେଶଗୁଡ଼ିକରେ ପ୍ରୋଟିନ୍ ସରବରାହ ତୁଳନାରେ କ୍ୟାଲୋରିର ସରବରାହ କମ୍ ହେବ ବୋଲି ଅନୁମିତ ହେଉଛି । ଆଞ୍ଚଳିକ କ୍ଷେତ୍ରରେ ଭାରସାମ୍ୟର ଅଭାବ ବିଶ୍ୱର ଖାଦ୍ୟ ସାମଗ୍ରୀ ବଜାରରେ ଜଟିଳତା ସୃଷ୍ଟି କରିବ । ବିଶ୍ୱର ବର୍ତ୍ତମାନ ଖାଦ୍ୟ ସଙ୍କଟ କୃଷି ଉନ୍ନୟନ ପଥରେ ଗୋଟିଏ ଚ୍ୟାଲେଞ୍ଜ ! ଏହି ଚ୍ୟାଲେଞ୍ଜର ମୁକାବିଲା କରିବା ସମୟରେ ଲକ୍ଷ୍ୟ ରଖିବାକୁ ହେବ ଯେପରି ଉନ୍ନତକାମୀ ଦେଶଗୁଡ଼ିକରେ ଜନସଂଖ୍ୟା ବୃଦ୍ଧିର ହାର ଅଧିକ କମାଇ ଦିଆଯାଇଥାଏ । କାରଣ ଜନସଂଖ୍ୟାର ବୃଦ୍ଧି ହିଁ ଖାଦ୍ୟ ସଙ୍କଟର ମୂଳ କାରଣ ହୋଇ ଠିଆ ହେବ ।

ମହାପାତ୍ର ନୀଳମଣି ସାହୁ





# ସମାଜବାଦ ଛଡ଼ା ପନ୍ଥା ନାହିଁ

ବିଶ୍ୱ ତଥା ଭାରତର ସମସ୍ୟାଗୁଡ଼ିକର ଆଶୁ ସମାଧାନ କେବଳ ସମାଜବାଦର ସଫଳ ରୂପାୟନ କରିଥାରେ ହିଁ ସମ୍ଭବ ହୋଇପାରିବ ବୋଲି ମୋର ଦୃଢ଼ ବିଶ୍ୱାସ ରହିଛି । ମୁଁ ଯେତେବେଳେ "ସମାଜବାଦ" ଶବ୍ଦଟି ଉଚ୍ଚାରଣ କରିଥାଏ, ସେତେବେଳେ ମୁଁ ଏହାକୁ କାଳ୍ପନିକ ଏକ ଜନକଲ୍ୟାଣକର ସ୍ପୃହା ବା ପନ୍ଥାରୂପେ ବ୍ୟବହାର କରେ ନାହିଁ । ବରଂ ମୁଁ ଏହାକୁ ଏକ ବିଜ୍ଞାନ ସମ୍ମତ ଅର୍ଥନୈତିକ ଦୃଷ୍ଟିକୋଣରୁ ବିବେଚନା କରିଥାଏ । ତେବେ ସେ ଯାହାହେଉ ନା କାହିଁକି ସମାଜବାଦ ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ମତବାଦ ଓ ଏହାକୁ ଏକ ବ୍ୟକ୍ତିଗତ ଓ ସାମାଜିକ ଜୀବନ-ଦର୍ଶନ ରୂପେ ଅଭିହିତ କଲେ ଅଯଥା ହେବ ନାହିଁ । ଏଥିନିମନ୍ତେ ସମାଜବାଦପ୍ରତି ମୋର ଦୃଷ୍ଟି ବିଶେଷଭାବେ ଆକର୍ଷିତ ହୋଇଛି । ଭାରତୀୟ ଜନସାଧାରଣଙ୍କ ମଧ୍ୟରେ ଆଜି ଯେଉଁ ଦାରିଦ୍ର୍ୟ, ବ୍ୟାପକ ବେକାରି, ଅର୍ଥନୈତିକ ଦୁସ୍ଥିତି ତଥା ଏକ ପରାଧୀନତାର ମନୋଭାବ ପ୍ରଭୃତି ବିଭିନ୍ନ ସମସ୍ୟାମାନ ଦେଖାଦେଇଛି ସେ ସବୁର ଉପଯୁକ୍ତ ସମାଧାନ ନିମନ୍ତେ ମୁଁ ସମାଜବାଦ ବ୍ୟତୀତ ଅନ୍ୟ କୌଣସି ପନ୍ଥା ଦେଖିପାରୁ ନାହିଁ ।

ଜବାହରଲାଲ ନେହେରୁ




# ବର୍ତ୍ତମାନ ପରିସ୍ଥିତିରେ ବ୍ୟକ୍ତିର କର୍ତ୍ତବ୍ୟ

ବାବାଜୀ ଶ୍ରୀ ରାମକୃଷ୍ଣ ଦାସ (ପଣ୍ଡିଚେରୀ)

ବର୍ତ୍ତମାନ ସମୟରେ ମନୁଷ୍ୟର ନିମ୍ନ ପ୍ରକୃତି ଅଧିକ କ୍ରିୟାଶୀଳ ହେବାରୁ ସଂସାରରେ ଯେପରି ବିଶୃଙ୍ଖଳ ଏବଂ ଜଟିଳ ପରିସ୍ଥିତି ସୃଷ୍ଟି ହୋଇଅଛି ସେହିପରି ବ୍ୟକ୍ତିର ଜୀବନମାର୍ଗ ମଧ୍ୟ ରୁଦ୍ଧ ହେଉଅଛି । ଏହି ବିଶୃଙ୍ଖଳା, ଅନ୍ୟାୟ, ଅସତ୍ୟ ଅବସ୍ଥା ସ୍ଥାୟୀ ହୋଇ କଦାପି ରହିପାରିବ ନାହିଁ । ବ୍ୟକ୍ତି ସ୍ୱେଚ୍ଛାରେ ନିମ୍ନ ପ୍ରକୃତିର କ୍ରିୟା ବର୍ଜନ କରି ଜୀବନର ଯଥାର୍ଥ ଲକ୍ଷ୍ୟ ମାର୍ଗରେ ଗତି କରିବ ଅଥବା ନିମ୍ନ ପ୍ରକୃତିର କ୍ରିୟାରୁ ନିବୃତ୍ତ ହେବା ସକାଶେ ପରିସ୍ଥିତି ବାଧ୍ୟ କରିବ । ଏହି ପରିସ୍ଥିତିର ପରିବର୍ତ୍ତନ ନିଃସନ୍ଦେହ ହେବ ।

ମନୁଷ୍ୟ ଜୀବନର ଲକ୍ଷ୍ୟ ଭଗବଦ୍ଦର୍ଶନ ପରମ ସୁଖ ଏବଂ ପରମ ସ୍ୱତନ୍ତ୍ରତା । ବ୍ୟକ୍ତି ଅଜ୍ଞାତରେ ପ୍ରକୃତି ଦ୍ୱାରା ପରିଚାଳିତ ହୋଇ ଏହି ଲକ୍ଷ୍ୟ ଆଡ଼କୁ ଗତି କରୁଅଛି । ସଂସାରରେ ଜଣେ ବ୍ୟକ୍ତି ଦୁଃଖ, ଦ୍ୱନ୍ଦ୍ୱ, ଅଶାନ୍ତି, ପରତନ୍ତ୍ରତା ଚାହୁଁ ନାହିଁ । କିନ୍ତୁ ପରମ ସୁଖ, ପରମ ସ୍ୱତନ୍ତ୍ରତା, ଜୀବନର ଏହି ଲକ୍ଷ୍ୟ ସମ୍ବନ୍ଧରେ ସଚେତନ ନ ଥିବା ଯୋଗୁଁ ପରମ ସୁଖକୁ ବ୍ୟକ୍ତି ସଂସାରବସ୍ତୁରେ ଖୋଜୁଅଛି । ସେଥିରେ ପରମ ସୁଖ ପରିବର୍ତ୍ତେ ସାମାନ୍ୟ ସଂସାରସୁଖ ସହିତ ଦୁଃଖ ଭୋଗୁଅଛି ଏବଂ ଅଜ୍ଞାନର ବଶ ହୋଇ ଅସତ୍ୟ, ମିଥ୍ୟାତ୍ୱର ଅଧୀନତା ସ୍ୱୀକାର କରି ନିଜର ଯଥାର୍ଥ ସ୍ୱତନ୍ତ୍ରତାର ପଥରୁଦ୍ଧ କରୁଅଛି । ଅଜ୍ଞାନର ଏହି ଦାସତ୍ୱକୁହିଁ ବ୍ୟକ୍ତି ସ୍ୱତନ୍ତ୍ରତା ବୋଲି ମାନି ନେଉଅଛି । କିନ୍ତୁ ଭଗବଦ୍ଦର୍ଶନ ପରମ ସୁଖ ତଥା ଯଥାର୍ଥ ସ୍ୱତନ୍ତ୍ରତା ଜୀବନର ଏହି ଲକ୍ଷ୍ୟର ଉପସ୍ଥିତି ଅସତ୍ୟ, ଅନ୍ୟାୟ ମହାନ ବାଧା ହୋଇ ଲୁଚିପାରୁ ନାହିଁ । ମନୁଷ୍ୟର ଏହି ଭୁଲକୁ ଭଗବାନ ଛାଡ଼ିଦେବେ ନାହିଁ । ନିଜ ପ୍ରଣାଳୀରେ ପରିସ୍ଥିତି ମାଧ୍ୟମରେ ମନୁଷ୍ୟର ଭୁଲକୁ ଭାଙ୍ଗିଦେବ ଏବଂ ତାକୁ ବାଧ୍ୟ କରେଇ ଯଥାର୍ଥ ମାର୍ଗରେ ନେଇ ଲକ୍ଷ୍ୟରେ ପହଞ୍ଚାଇ ଦେବ ।

ପ୍ରକାଶ ସହିତ ପୂର୍ଣ୍ଣ ସ୍ୱାଧୀନତା ଏବଂ ଜନ୍ମ ସ୍ୱତ୍ୱର ଅଧିକାର, ଅନ୍ୟାୟ କର୍ମ ଏବଂ ବିଶୃଙ୍ଖଳାର ହେବ ନିସ୍ତୃତ । ଏହି ଯେଉଁ ନୂତନ ବିଧାନ ତାହା ହେବ ସୁସଂଗତ ଶାସନପ୍ରଣାଳୀ ତଥା ଅନ୍ୟ ଦେଶର ଶାସନ ବିଧାନଠୁ ଭିନ୍ନ । ଏହା ହେବ ଅନ୍ୟ ଦେଶ ସକାଶେ ଆଦର୍ଶ । ଏହି ପ୍ରଣାଳୀକୁ ଯେଉଁମାନେ ବର୍ତ୍ତମାନ ଗ୍ରହଣ କରିବେ ପରେ ସେମାନେ ଏଥିରେ ସବୁ ଅନୁକରଣ କରିବେ ।

କିନ୍ତୁ ଯେଉଁମାନେ ଲକ୍ଷ୍ୟ ସମ୍ବନ୍ଧେ ସଚେତ ହୋଇ ସତ୍ୟ ଏବଂ ସ୍ୱତନ୍ତ୍ରତା ପ୍ରାପ୍ତ କରିବାକୁ ପ୍ରସ୍ତୁତ କରୁଅଛନ୍ତି, ଆଗାମୀ ଅତିମାନସ ସତ୍ୟ ସମ୍ବନ୍ଧେ ସଚେତନ ହୋଇଅଛନ୍ତି, ସେମାନେ ଆନ୍ତରିକତା ସହ ସାଧନା କରିବା ସଙ୍ଗେସଙ୍ଗେ ଏହି ସତ୍ୟର ସନ୍ଧାନ ବ୍ୟକ୍ତିଙ୍କ ପାଖରେ ପହଞ୍ଚାଇ ଦେବାକୁ ଚେଷ୍ଟାକରିବା ଉଚିତ । ଏହି ସନ୍ଧାନ ପ୍ରଚାରର ଆଧାରହୋଇଛି ପାଠଚକ୍ର ମହିଳା ପାଠଚକ୍ର, ଗ୍ରନ୍ଥାଗାର, ଯୁବ-ଛାତ୍ର କର୍ମୀଙ୍କ ସେମିନାର । ପୂର୍ବେ କୁହା ହୋଇଥିବା ଅନୁସାରେ ଏହି ସବୁକୁ ଆଧାର କରି ସତ୍ୟ ଭିତ୍ତିରେ ଗଢ଼ି ଉଠିବ ଆଶ୍ରମ ଶିକ୍ଷାକେନ୍ଦ୍ର ଆଦର୍ଶରେ ସ୍କୁଲ, ସତ୍ୟ ଭିତ୍ତିରେ ବ୍ୟବସାୟ, କୃଷି ମାଧ୍ୟମରେ ସାଧନା କେନ୍ଦ୍ର । ଅତିମାନସ ସତ୍ୟ ଆଧାରରେ ଏହିସବୁ ସଂସ୍ଥା ଯେତେ ଅଧିକ ବିସ୍ତାର ହେବ, ସେତେ ଅଧିକ ବ୍ୟକ୍ତି ଏହି ସତ୍ୟ ସମ୍ବନ୍ଧେ ସଚେତ ହେବେ ଏବଂ ଗ୍ରହଣ କରିବେ । ଏହିପରି ସାଧକମାନଙ୍କ ସଂଖ୍ୟା ଯେତେ ଅଧିକ ହେବ ପୃଥିବୀ ବାତାବରଣ ସେତେ ଶୁଦ୍ଧ ଓ ପବିତ୍ର ହେବ ତଥା ତାର ପ୍ରଭାବ ସମସ୍ତ ସଂସାରରେ ପଡ଼ିବ । ଶାସନ ବିଧାନ ଦ୍ୱାରା ଯେଉଁମାନଙ୍କୁ ସତ୍ୟ ଆଚରଣ କରିବାକୁ ବାଧ୍ୟ କରାହେଉଛି ସେମାନଙ୍କ ଅନ୍ତରରୁ ଧୀରେ ଧୀରେ ଅସତ୍ୟ ପ୍ରବୃତ୍ତି ଦୂର ହେବ ଏବଂ ସେମାନେ ମଧ୍ୟ ନୂତନ ଅତିମାନସ ସତ୍ୟ ଯୁଗ ପ୍ରତି ଅଗ୍ରସର ହେବେ । ଏହି ଉଭୟ ପ୍ରକାର ପ୍ରଣାଳୀ ଉଭୟଙ୍କୁ ସାହାଯ୍ୟ କରିବ ଏବଂ ଏକ ଅନ୍ୟର ପରିପୂରକ ହେବ । ବ୍ୟକ୍ତିର ଅସତ୍ୟ ଆଚରଣକୁ ନିୟନ୍ତ୍ରଣ କରିବାର ଅର୍ଥ ବ୍ୟକ୍ତିର ସ୍ୱତନ୍ତ୍ରତାରେ ହସ୍ତକ୍ଷେପ କରିବା ନୁହେଁ ବରଂ ବ୍ୟକ୍ତିର ସତ୍ୟ ସ୍ୱତନ୍ତ୍ରତା ମାର୍ଗରେ ସାହାଯ୍ୟ କରିବା ।

ବର୍ତ୍ତମାନ ପରିସ୍ଥିତି ଅନୁସାରେ ଏହାହିଁ ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । ଏଥିରେହିଁ ବ୍ୟକ୍ତି, ପରିବାର, ସମାଜ, ଦେଶ ତଥା ଜଗତର କଲ୍ୟାଣ ।

## ଠିକା ଶ୍ରମ ଆଇନ କଡ଼ାକଡ଼ିଭାବେ କାର୍ଯ୍ୟକାରୀ କରାଯିବ

ଓଡ଼ିଶା ଠିକା ଶ୍ରମ ଆଇନ ପରିସର ଅନ୍ତର୍ଭୁକ୍ତ ସମସ୍ତ ମୁଖ୍ୟ ନିଯୁକ୍ତିଦାତାମାନଙ୍କୁ ୧୯୭୫ ନଭେମ୍ବର ୩୦ ତାରିଖ ସୁଦ୍ଧା ସେମାନଙ୍କ ସଂସ୍ଥାଗୁଡ଼ିକୁ ରେଜେଷ୍ଟ୍ରିଭୁକ୍ତ କରାଯିବା ନିମନ୍ତେ ସଂପୃକ୍ତ ରେଜେଷ୍ଟ୍ରି ଅଫିସରଙ୍କୁ ଆବେଦନ କରିବା ପାଇଁ ରାଜ୍ୟ ସରକାରଙ୍କ ଶ୍ରମ ବିଭାଗ ତରଫରୁ ଏକ ନିର୍ଦ୍ଦେଶନାମା ଦିଆଯାଇଛି ।

ଶ୍ରମ ବିଭାଗର ଅନ୍ୟ ଏକ ନିର୍ଦ୍ଦେଶନାମାରେ କୁହାଯାଇଛି ଯେ ଉପରୋକ୍ତ ଠିକା ଶ୍ରମ ଆଇନ ପରିସର ଅନ୍ତର୍ଭୁକ୍ତ ଠିକାଦାରମାନଙ୍କର ଆବଶ୍ୟକ ଲାଇସେନ୍ସ ନଥିଲେ, ସେମାନେ ୧୯୭୫ ଡିସେମ୍ବର ୩୧ ତାରିଖ ପରେ ଆଉ ଠିକା କାମ କରିପାରିବେ ନାହିଁ । ତେଣୁ ସେମାନେ ଇତିମଧ୍ୟରେ ନିଜ ନିଜର ଲାଇସେନ୍ସ ଶୀଘ୍ର କରିନେବା ଆବଶ୍ୟକ । ଯେଉଁମାନେ ଉକ୍ତ ଆଇନ ଭଙ୍ଗ କରିବେ ସେମାନଙ୍କ ପ୍ରତି ଶାସ୍ତିବିଧାନ କରାଯିବ ।

କଟକ, ଜୟପୁର, ରାଉରକେଲା ଓ ସମ୍ବଲପୁରଠାରେ ଅବସ୍ଥାପିତ ସହକାରୀ ଶ୍ରମ କମିଶନରମାନଙ୍କୁ ରେଜେଷ୍ଟ୍ରି ଓ ଲାଇସେନ୍ସ ଅଧିକାରୀ ରୂପେ ନିଯୁକ୍ତ କରାଯାଇଛି । ସେମାନଙ୍କ ଦାୟିତ୍ୱରେ ଥିବା ସଂପୃକ୍ତ ଅଞ୍ଚଳମାନଙ୍କର ଠିକାଦାରମାନଙ୍କୁ ସେମାନେ ଲାଇସେନ୍ସ ଦେବେ ଏବଂ ମୁଖ୍ୟ ନିଯୁକ୍ତିକାରୀ ସଂସ୍ଥାଗୁଡ଼ିକୁ ରେଜେଷ୍ଟ୍ରିଭୁକ୍ତ କରାଇବେ ।

ରାଜ୍ୟ ସରକାର ୧୯୭୦ ମସିହାର ଓଡ଼ିଶା ଠିକା ଶ୍ରମ ( ନିୟନ୍ତ୍ରଣ ଓ ଉଚ୍ଛେଦ ) ଆଇନକୁ ଗତ ମଇ ମାସଠାରୁ କାର୍ଯ୍ୟକାରୀ କରିଛନ୍ତି । ଏହି ଆଇନ କାର୍ଯ୍ୟକାରୀ ହେବା ଦିନଠାରୁ ଯେଉଁ ସଂସ୍ଥାରେ ୨୦ ଜଣ କିମ୍ବା ତତୋଧିକ ଶ୍ରମିକ ଠିକା କାର୍ଯ୍ୟ କରୁଥିବେ ଓ ଆଇନ କାର୍ଯ୍ୟକାରୀ ହେବାର ୧୨ ମାସ ପୂର୍ବରୁ ଯେଉଁ ସଂସ୍ଥାମାନଙ୍କର ଠିକା କାର୍ଯ୍ୟ ହେଉଥିବ, ସେହିସବୁ ସଂସ୍ଥାପ୍ରତି ଉକ୍ତ ଆଇନ ଲାଗୁହେବ ।

# ଅପରାଧ ଓ ଆଧୁନିକ ସମାଜ



ଶ୍ରୀ ଶରତ ଚନ୍ଦ୍ର ମିଶ୍ର, ଆଇ.ପି.ଏସ୍.

ଆଧୁନିକ ସମାଜରେ ଅପରାଧ, ଅପରାଧ ମନୋବୃତ୍ତି, ଏହାର କାରଣ ଓ ସାମାଜିକ ପ୍ରଭାବ ସମ୍ବନ୍ଧରେ ସାମାନ୍ୟ ସୂଚନା ଦେବାପାଇଁ ଏ ପ୍ରବନ୍ଧଟି ଅଭିପ୍ରେତ ।

ଅତି ଆଦିମ ଯୁଗରୁ ଗୋଟିଏ ଧାରଣା ପ୍ରଚଳିତ ହୋଇ ଆସିଛି ଯେ—ସମାଜର ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ଅପରାଧ ମନୋବୃତ୍ତି ଅଧିକ । ଆମ ଦେଶରେ ସ୍ୱାଧୀନତା ପୂର୍ବରୁ କେତେକ ଜାତିକୁ ମଧ୍ୟ ଅପରାଧୀ ଜାତି ରୂପେ ବିବେଚନା କରାଯାଉଥିଲା ଓ ସେମାନଙ୍କ ଉପରେ ସରକାରଙ୍କ ପକ୍ଷରୁ କଡ଼ା ନଜର ରଖା ଯାଉଥିଲା । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର ପାଶ୍ଚାତ୍ୟ—ଦେଶୀ ଅପରାଧ ବିଜ୍ଞାନମାନଙ୍କ ମତ ଯେ ସାଧାରଣତଃ ବଂଶାନୁକ୍ରମିକ ଭାବରେ ଓ ନାତି ଶୀତୋଷ୍ଣ ସ୍ଥାନମାନଙ୍କରେ ଅପରାଧପ୍ରବଣତା ବେଶି । ଆଶା କରାଯାଉଥିଲା ଯେ ସଭ୍ୟତାର ରଥ ଚକ୍ରର ଅଗ୍ରଗତି ସଙ୍ଗେ ସଙ୍ଗେ ପାରିପାର୍ଶ୍ୱିକ ଅର୍ଥନୈତିକ ଉନ୍ନତି ସହିତ ଓ ଅପରାଧ ମନୋବୃତ୍ତି ଆପେକ୍ଷିକ ଭାବରେ ହ୍ରାସ ପାଇବ । ବର୍ତ୍ତମାନର ତଥାକଥିତ ଶିଳ୍ପୋନ୍ନତ ସଭ୍ୟ ସମାଜ ପ୍ରତି ସିଂହାବଲୋକନ କଲେ, ଏ ସିଦ୍ଧାନ୍ତରେ ଗୁରୁତର ପ୍ରମାଦ ଥିବାର ପରିଲକ୍ଷିତ ହୁଏ । ମାତ୍ର ଅଭାବ ସଙ୍ଗେ ଅପରାଧ ପ୍ରବୃତ୍ତିର ସମ୍ପର୍କ ସେତେ ନାହିଁ—ଧନସମ୍ପଦ ଓ କ୍ଷମତା ସଙ୍ଗେ ଅପରାଧ ପ୍ରବୃତ୍ତିର ସମ୍ବନ୍ଧ ସେତେ ଘନିଷ୍ଠ ବୋଲି କ୍ରମେ ଅପରାଧ ତତ୍ତ୍ୱବିଦ୍‌ମାନଙ୍କର ଗବେଷଣା ଓ ଅନୁସନ୍ଧାନରୁ ଜଣା ପଡୁଛି ।

ଗତ କେତେବର୍ଷ ମଧ୍ୟରେ ପୃଥିବୀର ସର୍ବାପେକ୍ଷା ଶିଳ୍ପୋନ୍ନତ ଆମେରିକା ଦେଶରେ ଅପରାଧ ସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇ ଚାଲିଛି । ଆମେରିକା ଦେଶ ସବୁଠାରୁ ଧନୀ ଓ ଶିଳ୍ପୋନ୍ନତ ହୋଇଥିବାରୁ ସେ ଦେଶର ଉଦାହରଣ ଉଲ୍ଲେଖଯୋଗ୍ୟ । ୧୯୬୦ ଠାରୁ ୧୯୬୪ ମଧ୍ୟରେ ଅପରାଧ ପ୍ରାୟ ଦୁଇ ଗୁଣ ବୃଦ୍ଧି ପାଇଛି ଓ ୧୯୬୩-୬୪ ଗୋଟିଏ ବର୍ଷରେ ଶତକଡ଼ା ୧୩ ଭାଗ ବଢ଼ିଛି । ଆଗ ସମୟରେ ଅଧିକାଂଶ ଅପରାଧ ପ୍ରାୟ ସହର ଅଞ୍ଚଳରେ ସୀମିତ ଥିଲା । ବର୍ତ୍ତମାନ ସହରତଳି ଅଞ୍ଚଳକୁ ଏହା ବ୍ୟାପିବାରେ ଲାଗିଛି । କେବଳ ୧୯୬୪ ମସିହାରେ ୧୦,୦୦୦ ଆମେରିକାବାସୀ ଅପରାଧୀ ହାତରେ ପ୍ରାଣ ହରାଇଛନ୍ତି ।

ପୃଥିବୀର ପ୍ରତ୍ୟେକ ଦେଶ ବର୍ତ୍ତମାନ ଶିଳ୍ପୋନ୍ନତ ହେବାକୁ ଚାହାନ୍ତି । ତେଣୁ ଏକ ଶିଳ୍ପୋନ୍ନତ ଦେଶରେ ଏପରି ସାମାଜିକ ଅବ୍ୟବସ୍ଥା ଅନୁଧ୍ୟାନର ବିଷୟ । ଏକ

ଶକ୍ତିଶାଳୀ ଦେଶର ଜଣେ ନାଗରିକ ଭଳିଆ ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ସତ୍ତ୍ୱେ ଏ ପ୍ରକାର ମନୋବୃତ୍ତି ଓ ମୂଲ୍ୟବୋଧ କିପରି ସୃଷ୍ଟି କରୁଛି, ତାହା ଅନୁଚିନ୍ତାର ବିଷୟ । ଥମାସ ମାନ୍ (THOMAS MANN) ଗୋଟିଏ ଉପନ୍ୟାସରେ ( Three Generations ) ଗୋଟିଏ ପରିବାରର ତିନୋଟି ପର୍ଯ୍ୟାୟ ଆଲୋଚନା କରିଥିଲେ । ପରିବାରର ପିତାମହ ଅର୍ଥ ଉପାର୍ଜନ କଲେ । ପିତା ସାମାଜିକ ପ୍ରତିଷ୍ଠା ଓ କ୍ଷମତା ଆହରଣ କଲେ । ପୁତ୍ର ପରିବାର ପାଇଁ ନାନା ସୁଖ ସ୍ୱାଚ୍ଛନ୍ଦ୍ୟ ଖୋଜି ବୁଲିଲେ । ସେପରି ବଂଶର କ୍ରମ ଅନୁସାରେ ମନ ଓ ଚିନ୍ତାର ପରିବର୍ତ୍ତନ ଘଟିଲା, ପରିବାରର ନୂତନ ମୂଲ୍ୟ ବୋଧହୁଏ ଅର୍ଥ, କ୍ଷମତା, ସୁଖ ସ୍ୱାଚ୍ଛନ୍ଦ୍ୟ ସମସ୍ତ ପାଇ ସାରିଲା ପରେ ଏକ ନୂଆ ସ୍ୱାଦ ଖୋଜିବା ସେ ନୂଆ ସ୍ୱାଦଟି କଣ ? ଅପରାଧ ନୁହେଁ କି ?

ଏକ ଗବେଷଣାରୁ ଜଣା ଯାଇଛି ଯେ ପାଶ୍ଚାତ୍ୟ ଦେଶରେ ଅଧିକାଂଶ ଅପରାଧୀ ଅପ୍ରାପ୍ତବୟସ୍କ । ଆମେରିକାରେ ପ୍ରାୟ ୩୪ ଭାଗ ଅପରାଧୀଙ୍କ ବୟସ ୨୫ ବର୍ଷରୁ କମ । ସବୁଠି ବହୁ କାଳଧରି ଅପରାଧ ପୁରୁଷମାନଙ୍କର ଏକ-ଚାଟିଆ କାରବାର ଥିଲା, ସ୍ତ୍ରୀ ଲୋକମାନେ ଏବେ ସେ ଦିଗରେ ଆଗେଇ ଆସିଲେଣି ଓ ୧୯୭୪ ମସିହାରେ ଆମେରିକାରେ ଧରାପଡ଼ିଥିବା ପ୍ରତ୍ୟେକ ୩ଜଣ ଚୋରରେ ଜଣେ ମହିଳା । ସାଧାରଣତଃ ନିଗ୍ରୋମାନଙ୍କ ମଧ୍ୟରେ ଜନସଂଖ୍ୟା ଅନୁପାତରେ ଅପରାଧ ସଂଖ୍ୟା ବେଶି କିନ୍ତୁ ଗୋରା ଲୋକମାନଙ୍କ ମଧ୍ୟରେ ଏହା ଦ୍ରୁତ ଗତିରେ ବୃଦ୍ଧି ପାଇବାକୁ ଲାଗିଛି । ଇଂଲଣ୍ଡ, ଜାପାନ ଇତ୍ୟାଦିରେ ଅପରାଧ ସଂଖ୍ୟା ଆମେରିକା ପରି ଏତେ ବେଶି ନ ହେଲେ ମଧ୍ୟ ଅନୁନ୍ନତ ଦେଶମାନଙ୍କ ତୁଳନାରେ ଜନସଂଖ୍ୟା ଅନୁପାତରେ ବେଶି । ସାମ୍ୟବାଦୀ ଦେଶମାନଙ୍କ ମଧ୍ୟରେ ମଧ୍ୟ ଅପରାଧ ସଂଖ୍ୟା ବୃଦ୍ଧି ପାଉଛି, ତଥାପି ତାହା ପାଶ୍ଚାତ୍ୟ ଦେଶମାନଙ୍କ ତୁଳନାରେ ବହୁତ କମ୍ । ଚିକାଗୋ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ନରଭାଲ୍ ମରିସ ( NORVAL MORRIS ) ପରାମର୍ଶ ଛଳରେ କହନ୍ତି ଯଦି କୌଣସି ଦେଶରେ ବାଳ ଅପରାଧ ଇତ୍ୟାଦି ହ୍ରାସ କରିବାକୁ ଚେଷ୍ଟା କରାଯାଏ, ପ୍ରଥମେ ଲୋକମାନଙ୍କ ମଧ୍ୟରେ ଶିକ୍ଷା ଓ ସମ୍ପତ୍ତି ଖେଳେଇବାକୁ ପଡ଼ିବ । ସବୁଠି ଏ ଅପରାଧ ମନୋବୃତ୍ତିର ଠିକ୍ କାରଣ ନିର୍ଣ୍ଣୟ କରାଯାଇ ପାରୁନାହିଁ, ତେବେ ମଧ୍ୟ କେତେଗୁଡ଼ିଏ ସମ୍ଭାବନାକୁ ଆଲୋଚନା କରାଯାଇପାରେ ।

(୧) ଆମେରିକା ମହାଦେଶକୁ ଭିନ୍ନ ଭିନ୍ନ ଦେଶରୁ ବହୁ ପ୍ରକାର ବୃତ୍ତିଧାରୀ ଲୋକ ପହଞ୍ଚିଥିଲେ । ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ବୁଝାମଣା ଓ ସୌହାର୍ଦ୍ଦ୍ୟର ଅଭାବ ଥିଲା । ଠିକ୍ ସେହିପରି ଆମ ଦେଶରେ ନୂତନ ଶିଳ୍ପନଗରୀ ସବୁ ଗଢ଼ାଉଠିଲାବେଳେ ଦେଶର ଭିନ୍ନ ଭିନ୍ନ ଅଞ୍ଚଳରୁ ଭିନ୍ନ ଭିନ୍ନ ଲୋକ ଆସି ଏକାଠି ବସବାସ କଲେ ଓ ସେ ସବୁ ଯାଗାମାନଙ୍କର ଅପରାଧ ସଂଖ୍ୟା ଅନ୍ୟ ଯାଗା ତୁଳନାରେ ବେଶି ହେଲା ।

(୨) ପଶ୍ଚିମ ଆମେରିକା ଅଧିକାର ସମୟରେ ଆମେରିକାନ୍‌ମାନେ ଅତି ନୃଶଂସ ଭାବରେ ସେଠିକାର ଆଦିମ ଅଧିବାସୀ ଲୋହିତ ଭାରତୀୟ (Red Indian) ମାନଙ୍କୁ ହତ୍ୟା କଲେ । ଯାହାକି କାଳକ୍ରମେ ଏକ ହତ୍ୟା ଓ ହିଂସାପ୍ରିୟତାର ସଭ୍ୟତା ସୃଷ୍ଟି କଲା । ଏ ଅଶାନ୍ତ ବାତାବରଣ ମଧ୍ୟରେ ପ୍ରତ୍ୟେକ ନାଗରିକମାନଙ୍କୁ ରକ୍ଷା କରିବାପାଇଁ ଆମେରିକା ସରକାର ଅସ୍ତ୍ରଶସ୍ତ୍ର ଉପରୁ ସମସ୍ତ ନିୟନ୍ତ୍ରଣ ଉଠାଇଦେଇ ସମସ୍ତ ଲୋକଙ୍କୁ ଆତ୍ମରକ୍ଷା ନାମରେ ଅସ୍ତ୍ରଶସ୍ତ୍ର ରଖିବାର ସୁବିଧା ଦେଲେ । ଫଳତଃ ଅଧିକାଂଶ ଅପ୍ରାପ୍ତବୟସ୍କ ବାଳକ ବାଳିକା ରାସ୍ତାଘାଟରେ ପିସ୍ତଲ ଧରି ବୁଲନ୍ତି ଓ ଅଧିକାଂଶ ସମୟରେ ତାହାର ଉପଯୋଗ କରନ୍ତି । ବର୍ତ୍ତମାନ ସେହିପରି ବଙ୍ଗଳା ଦେଶରେ ଅସ୍ତ୍ରଶସ୍ତ୍ର ଉପରେ ନିୟନ୍ତ୍ରଣ ଜାରି କରାହୋଇ ନାହିଁ ଓ ଅପରାଧ ବଢ଼ୁଛି ।

(୩) ଭାଙ୍ଗସୁରା ଗଞ୍ଜେଇ ଇତ୍ୟାଦିର ବହୁଳ ପ୍ରଚଳନ, ଆମେରିକା ସୈନ୍ୟମାନଙ୍କର ଦ୍ୱିତୀୟ ମହାଯୁଦ୍ଧ, କୋରିଆ-ଯୁଦ୍ଧ ଓ ଭିଏତ୍‌ନାମ୍ ଯୁଦ୍ଧ ଯୋଗୁ ବହୁ ବର୍ଷଧରି ଦେଶରେ ଅନୁପସ୍ଥିତି ପାରିବାରିକ ସ୍ଥିତିକୁ ଦୁର୍ବଳ କରି ପକାଇଲା । ଅଧିକାଂଶ ମହିଳା ଭିନ୍ନ ଭିନ୍ନ ଆୟକାରୀ ପନ୍ଥାରେ ପ୍ରବେଶ କରିବା ହେତୁ ବାଳକ ବାଳିକାମାନେ ଗୃହରେ ପିତାମାତାଙ୍କର ସ୍ନେହରୁ ବଞ୍ଚିତ ହେଲେ । ଏ ସମସ୍ୟା ଅନ୍ୟାନ୍ୟ ଉନ୍ନତ ଦେଶରେ ଓ ଭାରତ ବର୍ଷର ସହରାଞ୍ଚଳରେ କେତେକାଂଶରେ ଦେଖା ଦେଲାଣି । ପକ୍ଷାନ୍ତରେ ଯୁଦ୍ଧପରେ ଜନ୍ମହାର ବୃଦ୍ଧିପାଇବା ହେତୁ ଜନସଂଖ୍ୟା ମଧ୍ୟରେ କିଶୋରମାନଙ୍କ ସଂଖ୍ୟା ବୃଦ୍ଧି ପାଇ ଚାଲିଛି । ୧୯୫୦ ମସିହାରେ ଆମେରିକାରେ ଅଢ଼େଇ କୋଟି କିଶୋର ଥିଲେ, ବର୍ତ୍ତମାନ ସେ ସଂଖ୍ୟା ବୃଦ୍ଧି ପାଇ ସାଢ଼େଚାରିକୋଟିରେ ପହଞ୍ଚିଲାଣି । ଏ ସଂଖ୍ୟା ବୃଦ୍ଧି ଓ ଆନ୍ତର୍ଜାତିକ ଅର୍ଥନୈତିକ ପରିସ୍ଥିତି ଦୃଷ୍ଟିରୁ ଆମେରିକାରେ ମଧ୍ୟ ବେକାର ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲାଣି ଓ ବେକାରୀ ପ୍ରାୟ ଶତକଡ଼ା ୭ ଭାଗ ପର୍ଯ୍ୟନ୍ତ ଦୃଷ୍ଟ ହେଲାଣି । ପଶ୍ଚିମ ଇଉରୋପରେ ଗଲା ୨ ବର୍ଷ ମଧ୍ୟରେ ବେକାର ସଂଖ୍ୟା ପ୍ରାୟ ବଢ଼ିବାରେ ଲାଗିଛି ।

(୪) ସାମାଜିକ ପରିବେଷ୍ଟନୀ ଅପରାଧ ମନୋବୃତ୍ତିର ବିରୋଧ କରିବା ପରିବର୍ତ୍ତେ ତାହା ସପକ୍ଷରେ ବାତାବରଣ

ସୃଷ୍ଟି କରୁଛି । ଆମେରିକା ଟେଲିଭିଜନରେ ଦୈନିକ ପ୍ରାୟ ଶାଂତି ହତ୍ୟା ଚାଳି ଦେଖାଯାଏ ଓ ଜଣେ ହିସାବମତେ ସ୍କୁଲରେ ଟେଲିଭିଜନ ଦେଖୁଥିବା ବାଳକ ୧୪ ବର୍ଷ ବୟସ ମଧ୍ୟରେ ପ୍ରାୟ ୧୧ ହଜାରଟି ହତ୍ୟା ଟେଲିଭିଜନ ପରଦାରେ ଦେଖିସାରିଥାଏ । ଅନ୍ୟ ଅନ୍ୟାନ୍ୟ ଅପରାଧ କଥା ବର୍ଣ୍ଣନା ନ କରିବା ଭଲ । ଆମ ଦେଶରେ ମଧ୍ୟ ଶସ୍ତା ଉପନ୍ୟାସ ଓ ହିନ୍ଦି ଚଳଚ୍ଚିତ୍ରମାନେ ଅପରାଧୀକୁ ହିରୋ କରି ତୋଳିବାର ଲୋଭ ସମ୍ଭାଳି ପାରନ୍ତି ନାହିଁ । ପ୍ରାୟ ୨୩ ବର୍ଷ ତଳେ ଜଣେ ଯୁବକ ଦିଲ୍ଲୀରେ ଗୋଟିଏ ସିନେମା ଦେଖି ସେଥିରୁ ଅପରାଧ କରିବାର ପ୍ରେରଣା ପାଇଥିବା ସ୍ୱୀକାର କରିଥିଲା । ଯାହାହେଉ, ହିନ୍ଦି ଚଳଚ୍ଚିତ୍ର ମାଲିକଙ୍କର ଭାରତୀୟ ଧର୍ମଶାସ୍ତ୍ର ଜନସାଧାରଣଙ୍କ ପ୍ରତି କିଛି ସମ୍ମାନ ଅଛି । ଅପରାଧୀ ହିରୋ ଶେଷରେ ତାହାର କୃତକର୍ମର ଫଳ ଭୋଗକରେ । କିନ୍ତୁ ଆମେରିକାର ଟେଲିଭିଜନ ପରଦାରେ ସେପରି ଏକ ପରିସମାପ୍ତି ବିଶେଷ ଗ୍ରହଣୀୟ ହେଉନାହିଁ । ପ୍ରକୃତ ଅପରାଧୀ ଦଣ୍ଡ ନ ପାଇବାର ପରୋକ୍ଷରେ ଅପରାଧକୁ ଉତ୍ସାହିତ କରିବାର ଏକ ବଡ଼ କାରଣ । ଆମେରିକା ଦେଶରେ ଶହେ ଅପରାଧୀଙ୍କ ମଧ୍ୟରୁ ପ୍ରାୟ ୨୦ ଜଣ ଗିରଫ ହୁଅନ୍ତି ଓ ତନ୍ମଧ୍ୟରୁ ୩ ଜଣ ଜେଲ ଯାଆନ୍ତି । ବାକି ଅପରାଧୀମାନେ ପ୍ରାୟ ଛାଡ଼ ପାଇଯାଆନ୍ତି । ଏହା ଫଳରେ ପୋଲିସ ବିଶେଷ ଭୟ ସୃଷ୍ଟି କରିପାରେନା ଓ ପାରୋଲରେ ଥାଇ ଏକାଧିକ ଅପରାଧ କରିବା ଏକ ସାଧାରଣ ଘଟଣା ହୋଇଯାଇଛି । ଏ ସବୁ ସମସ୍ୟାର ସମାଧାନ ସେପରି ସହଜସାଧ୍ୟ ନୁହେଁ । ଅନେକ ଦେଶରେ କେବଳ ପୋଲିସ ଉପରେ ନିର୍ଭର କରି ବା ପୋଲିସର ଶକ୍ତି ବୃଦ୍ଧି କରି ସମସ୍ୟାର ସମାଧାନ ଚେଷ୍ଟା କରାଯାଏ । ଆଜିକାଲି ପ୍ରତ୍ୟେକ ନଗରମାନଙ୍କରେ ବେସରକାରୀ ନିଯୁକ୍ତ ସଂଖ୍ୟା ପୋଲିସ ସଂଖ୍ୟାଠାରୁ ବଳିଗଲାଣି ଓ ଅପରାଧୀମାନଙ୍କର ବୈଜ୍ଞାନିକ ପ୍ରଣାଳୀ ଓ ଅସ୍ତ୍ରଶସ୍ତ୍ର, ଯାନବାହନ ପୋଲିସ ସଙ୍ଗରେ ପ୍ରାୟ ସମାନ ବା ପୋଲିସଠାରୁ ଉନ୍ନତ ହୋଇ ଗଲାଣି । ପୋଲିସ ଶାସନ ସାଧାରଣ ଶାସନର ଏକ ଅଙ୍ଗ ଓ ସାଧାରଣ ଶାସନ ସରକାରର ଏକ ଅଙ୍ଗମାତ୍ର । ସେହିପରି ସରକାର ସମାଜର ଏକ ଅଂଶ ମାତ୍ର । ଅପରାଧ ଏକ ସାମାଜିକ ସମସ୍ୟା—ଏହାକୁ ସମଗ୍ର ସମାଜହିଁ ସମାଧାନ କରିପାରେ । ପୋଲିସ ଶାସନ ଏହି ଏକ ଉପାଙ୍ଗ—ସେଥିପାଇଁ ଏକାକୀଭାବେ ଏ ସମସ୍ୟାର ସମାଧାନ କରି ପାରିବ ବୋଲି ଆଶା କରିବା ଏକ ଭ୍ରମମୂଳକ ମାତ୍ର । ସାମାଜିକ ନ୍ୟାୟ, ପାରସ୍ପରିକ ସ୍ନେହ ସହଯୋଗ ଓ ଭ୍ରାତୃଭାବ ବୃଦ୍ଧି, ଅବିଶ୍ୱାସ, ସନ୍ଦେହ; ସ୍ୱାର୍ଥପରତା ଓ ଶୋଷଣକୁ ସମାଜରେ ମୁକାବିଲା କରି ଏକ ନୈତିକ ବାୟୁମଣ୍ଡଳ ସୃଷ୍ଟି କଲେ ଓ ପରିବାର ମଧ୍ୟରେ ନିଜର ଗୁରୁଜନ ଓ ପୂର୍ବପୁରୁଷଙ୍କ ପ୍ରତି ନିଜର କର୍ତ୍ତବ୍ୟ ପାଳନ କରି ଏକ ସୁସ୍ଥ ବାତାବରଣ ସୃଷ୍ଟି ହେଲେ ଅପରାଧ ମନୋବୃତ୍ତି ବହୁ ପରିମାଣରେ ହ୍ରାସ ପାଇପାରିବ—

(ଆକାଶବାଣୀ କଟକଙ୍କ ସୌଜନ୍ୟରୁ ପ୍ରାପ୍ତ)



ଏ ସବୁ କାହିଁକି ହେଉଛି ? କାହିଁକି ଜନଗତ ପଦାର୍ଥ ଏତେ ସମୃଦ୍ଧ ପ୍ରଦର୍ଶନ ଓ କାହିଁକି ଜଡ଼ପଦାର୍ଥ-ଗୁଡ଼ିକ ପ୍ରତି ଏତେ ଅଯତ୍ନ, ଏତେ ଅବହେଳା, ଏତେ ଅପଚୟ ? ଶ୍ରୀ ଅରବିନ୍ଦ କହନ୍ତି—ଏସବୁ ବ୍ୟକ୍ତିମାନଙ୍କର ପ୍ରାଣଶକ୍ତିର ଅଯଥା ଉତ୍ତେଜନା ଏବଂ ତାମସିକ ଜଡ଼ତାରୁ ହୋଇଥାଏ । ଜଡ଼ପଦାର୍ଥ ସଂଗ୍ରହ କରିବାରେ କେହି କେହି ଖୁବ୍ ଉତ୍ତେଜନାଜନିତ ଆନନ୍ଦ ପାନ୍ତି । ମାତ୍ର ଜଡ଼ପଦାର୍ଥର ଯତ୍ନ ନେବାବେଳକୁ ସେମାନଙ୍କୁ ଏକ ତାମସିକ ଜଡ଼ତା ଘାରି ବସେ । ଯେଉଁ ପରିବାରରେ ଓ ଯେଉଁ ଦେଶରେ ଏଭଳି ଲୋକଙ୍କ ସଂଖ୍ୟା ବେଶି ଓ ବୃଦ୍ଧି ଲାଭ କରୁଥାଏ ସେ ପରିବାର ଓ ସେ ଦେଶରୁ ଅଚିରେ ଲକ୍ଷ୍ମୀ ଛାଡ଼ି ଚାଲିଯାନ୍ତି । ସେ ପରିବାର ଓ ସେ ଦେଶରେ ଅଭାବ ହୁଏ ନିତ୍ୟ ସହଚର । ଧନ ସମ୍ପଦ ଜୀବନୀଶକ୍ତି ଭଳି ଗୋଟିଏ ମୁଖ୍ୟ ଶକ୍ତି । ମାତ୍ର ତା'ର ଅପବ୍ୟବହାର ଓ ଅପଚୟ ହେଲେ ଏ ଶକ୍ତି ଦୁର୍ବଳ ହୋଇଯାଏ ।

ଆମେ ବିଜ୍ଞାନ ବଳରେ ବହୁ ଖାଦ୍ୟ ଉତ୍ପନ୍ନ କରିପାରୁ—ବହୁ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ଉତ୍ପାଦନ କରିପାରୁ—ମାତ୍ର ଯଦି ଏ ସବୁ ଅପଚୟ ଓ ବିଶୃଙ୍ଖଳା ବଢ଼ିଚାଲେ, ତେବେ ଆମ ଦୁର୍ଦ୍ଦଶା କେବେ ବି ଘୁଞ୍ଚିବ ନାହିଁ । ଲକ୍ଷ୍ମୀ ଛାଡ଼ିଯାନ୍ତି ଓ ତାଙ୍କ ଆସନରେ ବସନ୍ତି ହତଲକ୍ଷ୍ମୀ ବା ଅଲକ୍ଷ୍ମୀ ।

ମାତ୍ର ତା'ମାନେ ନୁହଁ ଯେ ଆମେ ଅଧିକ ଉତ୍ପାଦନ ବା ଉତ୍ପନ୍ନ କରିବୁ ନାହିଁ କି ଅଧିକ ଖର୍ଚ୍ଚ ବା ଭୋଗ କରିବୁ ନାହିଁ । ପୂର୍ଣ୍ଣାଙ୍ଗଭାବେ ମଣିଷଟିଏ ହେବାକୁ ହେଲେ ବା ଗୋଟିଏ ସଂଗତ ଜୀବନ ଯାପନ କରିବାକୁ ହେଲେ ଆତ୍ମ-ସଂଯମ ଓ ଭୋଗ୍ୟ ବସ୍ତୁଗୁଡ଼ିକର ସଦ୍‌ବ୍ୟବହାର ନିତାନ୍ତ ଆବଶ୍ୟକ । ଅନେକ ବ୍ୟକ୍ତି ଅଛନ୍ତି—ଯେଉଁମାନେ ଖୁବ୍ କଠୋର ଜୀବନ ଯାପନ କରନ୍ତି । ଭଲ ଖାନ୍ତି ନାହିଁ —ଭଲ ପିନ୍ଧନ୍ତି ନାହିଁ । ଏକ ତ୍ୟାଗର ଜୀବନ ସେମାନଙ୍କର । ସେମାନଙ୍କର ନିବୃତ୍ତି ମାର୍ଗ ଗୋଟିଏ ପୂର୍ଣ୍ଣାଙ୍ଗ ଏବଂ ସୁସଂଗତ ସୁନ୍ଦର ମଧୁର ଜୀବନ ଲାଗି ଏପରି କଠୋର ଜୀବନର ଆବଶ୍ୟକତା ନାହିଁ—ଏପରି ଉଗ୍ର ନିବୃତ୍ତି ବା ନିରୋଧ ମାର୍ଗ ମଧ୍ୟ ଆଦର୍ଶ ନୁହେଁ । କିନ୍ତୁ ଶ୍ରୀ ଅରବିନ୍ଦ ସ୍ପଷ୍ଟଭାବେ କହୁଛନ୍ତି—ଆଦୌ ଆତ୍ମ-ସଂଯମ ନ ଥିବା ଲୋକ ଅପେକ୍ଷା କଠୋର ସଂଯମଶୀଳ ନିବୃତ୍ତି ମାର୍ଗୀ ସନ୍ନ୍ୟାସୀର ଜୀବନ ନିଶ୍ଚୟ ଭଲ ।

ବସ୍ତୁ ଜଗତ ଉପରେ ପ୍ରଭୁତ୍ୱ ମାନେ କ'ଣ ? ଶ୍ରୀ ଅରବିନ୍ଦ କହନ୍ତି—ବସ୍ତୁ ଜଗତ ଉପରେ ପ୍ରଭୁତ୍ୱର ମାନେ ନୁହଁ ଯେ ପ୍ରଚୁର ଉତ୍ପାଦନ କର । ପ୍ରଚୁର ଜଡ଼ପଦାର୍ଥର ମାଲିକ ହୁଅ ଓ ଯଥେଚ୍ଛାଭାବେ ସେଗୁଡ଼ିକର ଅପଚୟ କର ଏବଂ ଯେତେ ଶୀଘ୍ର ପାର ସେଗୁଡ଼ିକ ଶୂନ୍ୟ ବା ଅର୍ଦ୍ଧଭୋଗ କରି ଫୋପାଡ଼ି ଦିଅ । ବସ୍ତୁ ଜଗତ ଉପରେ ପ୍ରଭୁତ୍ୱର ପ୍ରକୃତ ଅର୍ଥହେଲା—ବସ୍ତୁଗୁଡ଼ିକର ଠିକ ଓ ଯତ୍ନ ବ୍ୟବହାର, ବିନିଯୋଗ ଏବଂ ସେଗୁଡ଼ିକୁ ଭୋଗ କରିବା ଦିଗରେ ଯଥାର୍ଥ ଆତ୍ମ-ସଂଯମ ।



---

## ଉଠା ଜଳସେଚନ କରପୋରେସନ ତରଫରୁ ଚାଷୀମାନଙ୍କୁ ଡିଜେଲ ପମ୍ପ ଯୋଗାଣ ବ୍ୟବସ୍ଥା

ଜଳସେଚନ ଉଦ୍ଦେଶ୍ୟରେ ଚାଷୀମାନଙ୍କୁ ଭଡ଼ା ସୂତ୍ରରେ ଯୋଗାଇ ଦେବାକୁ ଓଡ଼ିଶା ଉଠା ଜଳସେଚନ କରପୋରେସନ୍ ରାଜ୍ୟର ସବୁ ଜିଲ୍ଲାରେ ସମୁଦାୟ ୮୨୭ଟି ଡିଜେଲ ପମ୍ପ ରଖିଛନ୍ତି । କଟକ ଜିଲ୍ଲାରେ ୨୭୨ଟି, ପୁରୀରେ ୪୩ଟି, ଢେଙ୍କାନାଳରେ ୪୧ଟି, ବାଲେଶ୍ୱରରେ ୪୭ଟି, ମୟୂରଭଞ୍ଜରେ ୪୮ଟି, କେନ୍ଦୁଝରରେ ୧୩ଟି, ସମ୍ବଲପୁରରେ ୧୬୭ଟି, ସୁନ୍ଦରଗଡ଼ରେ ୨୭ଟି, ଗଞ୍ଜାମରେ ୫୪ଟି, ଫୁଲବାଣୀରେ ୧୨ଟି, କୋରାପୁଟରେ ୨୫ଟି, ବଲାଙ୍ଗିରରେ ୭୪ଟି ଓ କଳାହାଣ୍ଡି ଜିଲ୍ଲାରେ ୨୦ଟି ପମ୍ପ ରଖାଯାଇଛି ।

ସର୍ବନିମ୍ନ ୫ ଅଶ୍ୱଶକ୍ତିଠାରୁ ସର୍ବାଧିକ ୪୦ ଅଶ୍ୱଶକ୍ତି ବିଶିଷ୍ଟ ଥିବା ଏହି ଡିଜେଲ ପମ୍ପଗୁଡ଼ିକର ଦୈନିକ ଭଡ଼ାହାର ଟ୧୬୯ରୁ ଟ୧୦୪୯ ପର୍ଯ୍ୟନ୍ତ ଧାର୍ଯ୍ୟ କରାଯାଇଛି । ଯଦି ଜଣେ ଚାଷୀ କୌଣସି ଏକ ପମ୍ପକୁ ମାସକ ପାଇଁ ଭଡ଼ା ନେବେ, ତେବେ ତାଙ୍କୁ ଏହି ହାରରେ ମାତ୍ର ୨୫ ଦିନ ପାଇଁ ଭଡ଼ା ଦେବାକୁ ପଡ଼ିବ ।

ଭଡ଼ା ନେବାକୁ ଇଚ୍ଛୁକ ଥିବା ଆଗ୍ରହୀ ଚାଷୀମାନେ ସଂପୃକ୍ତ ଅଞ୍ଚଳରେ ଥିବା କରପୋରେସନର ଆସିଷ୍ଟାଣ୍ଟ ଇଞ୍ଜିନିୟର ପ୍ରମୁଖ ଅଫିସରମାନଙ୍କ ସହିତ ଯୋଗାଯୋଗ ସ୍ଥାପନ କରନ୍ତୁ ।

---

# ଆଜି ପାଇଁ ନା ଆସନ୍ତା କାଲି ପାଇଁ

( ଶ୍ରୀ ରମେଶ ଥାପରଙ୍କ ପ୍ରବନ୍ଧ ଉପରେ ଆଧାରିତ )

ମନୀଷା

ଆଜି ସମଗ୍ର ବିଶ୍ୱରେ ବିଶେଷକରି ଦ୍ରୁତ ଜନସଂଖ୍ୟା ବୃଦ୍ଧି ପାଇ ଲାଗିଛି ଏବଂ ସେହି ବିପୁଳ କ୍ରମବର୍ଦ୍ଧମାନ ଜନତା ଲାଗି ଖାଦ୍ୟ, ବସ୍ତ୍ର, ଗୃହ, ଔଷଧ ଯାନବାହନ ଓ ଅନ୍ୟାନ୍ୟ ଆବଶ୍ୟକ ବସ୍ତୁ ଯୋଗାଇବା ଏବେ ଗୋଟାଏ କଠିନ ସମସ୍ୟା ହୋଇଉଠିଛି—ଆମ ଦେଶରେ ତ ନିଶ୍ଚୟ । ତେବେ ବଡ ବଡ ଧନଶାଳୀ ରାଷ୍ଟ୍ରରେ ବି ସମସ୍ୟା ତଦ୍ରୂପ । ଏଥି ଲାଗି ଯେତେ ଯାହା ଯୋଜନା ହେଉଛି—ତାହା ଆଶାନୁରୂପ ସଫଳତା ଅର୍ଜନ କରିପାରୁ ନାହିଁ । ତା'ର କାରଣ ସ୍ୱରୂପ ଦେଖାଯାଉଛି—ଆଶାନୁରୂପ ସମ୍ବଳର ଅଭାବ ଏବଂ ପାରିପାର୍ଶ୍ୱିକ ସଂଗତି ରକ୍ଷା କରିପାରୁନଥିବା ବିଭିନ୍ନ ପ୍ରକାର ପରସ୍ପର ବିଚ୍ଛିନ୍ନ ଯୋଜନା ଗୁଡ଼ିକର ବିଫଳତା । ଅବଶ୍ୟ ଏକଥା କେତେକାଂଶରେ ସତ୍ୟ—ମାତ୍ର ସବୁଠାରୁ ବଡ କାରଣଟି ହେଉଛି ବୋଧହୁଏ—"ଆମର ବହୁଳ ଦ୍ରବ୍ୟ ବ୍ୟବହାର ଅଭ୍ୟାସ ଓ ପ୍ରବଣତା ।" ଏହା ଆମର ସାଧାରଣ ଜୀବନ ଯାପନ ଶୈଳୀରେ ମିଶିଗଲାଣି—ଏବଂ ନାନାପ୍ରକାର ବିଜ୍ଞାପନ ମାଧ୍ୟମରେ ବି ବହୁ ପ୍ରକାର ଜିନିଷ ବ୍ୟବହାରର ପ୍ରରୋଚନା ଲୋକେ ପାଉଛନ୍ତି ଏବଂ ଏହି ଚିତ୍ତଚମତ୍କାରୀ ବିଜ୍ଞାପନ ଦାତାମାନେ ଲୋକଙ୍କ ରୁଚି ଓ ମାନକୁ ତିଆରି କରି ଚାଲିଛନ୍ତି । ଏ ପର୍ଯ୍ୟନ୍ତ ଖୁବ୍ କମ୍ ଲୋକ ବୁଝିଛନ୍ତି ଯେ ଯେଉଁପ୍ରକାର ଅର୍ଥନୀତିକ, ରାଜନୀତିକ ଓ ସାମାଜିକ ମୂଲ୍ୟବୋଧ ଉପରେ ଜନସାଧାରଣଙ୍କର ଜୀବନ ଯାପନ ପ୍ରଣାଳୀ ଗତି କରୁଛି—ତାହାର ଭବିଷ୍ୟତ କେତେ ଅନ୍ଧକାରମୟ ! ପ୍ରାଚୁର୍ଯ୍ୟପୂର୍ଣ୍ଣ ସମୃଦ୍ଧ ଦେଶଗୁଡ଼ିକରେ ମଧ୍ୟ ବର୍ତ୍ତମାନକାଳଟି ଯେପରି ସବୁ ଅତିବାହିତ ହେଉଛି—ସେଥିରୁ ଭବିଷ୍ୟତରେ ଏ ପୃଥିବୀ ଗ୍ରହଟିର ଅବସ୍ଥା ଯେ କି ଶୋଚନୀୟ ହୋଇପଡ଼ିବ ସେକଥା ମଧ୍ୟ ଏବଠୁଁ ବୁଝି ବିଚାରିବାର ଅଛି ।

ବହୁ ଡେରିରେ ହେଲେ ବି ବର୍ତ୍ତମାନ ପୃଥିବୀର ବହୁ ବୁଦ୍ଧିମାନ ଲୋକେ ବୁଝି ପାରିଲେଣି ଯେ, କୌଣସି ଉତ୍ପାଦନ ବା ସୃଜନ ସୀମାହୀନ ଗତିରେ ଚାଲିପାରେ ନାହିଁ ଏବଂ ସବୁ ବିଷୟର ଗୋଟାଏ ଗୁଣାତ୍ମକ ପରିବର୍ତ୍ତନ ହେବା ନିତାନ୍ତ ଆବଶ୍ୟକ ବଂଚିବା ଲାଗି ଏକ ନୂତନ ଧାରା ବା ମୂଲ୍ୟବୋଧର ସୃଷ୍ଟି ହେବା ଦରକାର । ସୁସ୍ଥ ଓ ସୁନ୍ଦରଭାବେ ବଂଚିବାକୁ ହେଲେ ଏବଂ ଜନସଂଖ୍ୟାକୁ ଶୃଙ୍ଖଳିତ କରିବାକୁ ହେଲେ ଆମକୁ ବର୍ତ୍ତମାନ ହିଁ ତତ୍ପର ହେବାକୁ ପଡ଼ିବ ।

# ଅପଚୟର ସଂକଟ

ସମାଜର ସ୍ୱଚ୍ଛଳ ଶ୍ରେଣୀର ବ୍ୟକ୍ତିମାନେ ତାଙ୍କର ଜୀବନ-ଧାରଣ-ପ୍ରଣାଳୀର ମାନ ସ୍ୱରୂପ ସ୍ୱଭାବତଃ ଯେପରି ଭାବେ ଖାଦ୍ୟଦ୍ରବ୍ୟ ଗୁଡ଼ିକର ବହୁଳ ଅପ-ବ୍ୟବହାର କରି ଆସୁଛନ୍ତି, ତାହାକୁ ତତ୍କାଳ ବନ୍ଦ କରିବା ଉଚିତ । କାରଣ ବ୍ୟବହାର୍ଯ୍ୟ ବସ୍ତୁଗୁଡ଼ିକର ଉତ୍ପାଦନ ଯେତେ ସୀମାଭିତରେ ରହିବାକୁ ବାଧ୍ୟ, ସେହିପରି ସେଗୁଡ଼ିକର ଅପବ୍ୟବହାର ବା ନଷ୍ଟକୁ ମଧ୍ୟ ରୋକିବାକୁ ପଡ଼ିବ । ଯେତେ ଅପଚୟକୁ ରୋକିବା ଦରକାର, ସେମିତି ଆମର ଚାହିଦାଗୁଡ଼ିକୁ ମଧ୍ୟ ନିୟନ୍ତ୍ରଣ କରିବା ଉଚିତ । ଆମର ଯେତେବେଳେ ଯାହା ଇଚ୍ଛାହେବ ତାହା ଆମେ କିଣିଦେବୁ ଓ ବ୍ୟବହାର କରି ପାରିବୁ—ଏପରି ମନୋଭାବ ବା ଅଭ୍ୟାସ ଆଉ ଏଣିକି ଚଳିବ ନାହିଁ । ଏହା ବର୍ତ୍ତମାନ ଆମ ଆଗରେ ଏକ କଠିନ ଆହ୍ୱାନ । ଏହା କେବଳ କୌଣସି ପ୍ରକାର ଜିନିଷପତ୍ରର ଦରଦାମ ବୃଦ୍ଧିଜନିତ ବ୍ୟାପାର ନୁହେଁ—ବରଂ ଆମର ଅତିରିକ୍ତ ଓ ଯଥେଚ୍ଛା ଦ୍ରବ୍ୟ ବ୍ୟବହାର ଜନିତ ଏକ ବିଷମ ସଙ୍କଟ ଏବଂ ଏଥିପାଇଁ ଆମେ ସମସ୍ତେ ଦାୟୀ ।

ସମାଜରେ ସବୁପ୍ରକାର ସାମ୍ୟ ପ୍ରତିଷ୍ଠାଲାଗି ବିପ୍ଳବ ବଢ଼ିଚାଲିଛି । ଯୁଗ ଯୁଗ ଧରି ଲାଞ୍ଛିତ ଓ ଶୋଷିତ କୃଷ୍ଣକାୟ ଜାତିମାନେ ସେମାନଙ୍କର ମର୍ଯ୍ୟାଦା ଓ ଅଧିକାର ସାବ୍ୟସ୍ତ କରିବାଲାଗି ଆନ୍ଦୋଳନମାନ କରିଚାଲିଛନ୍ତି । ପୁଣି ସବୁ ଦେଶରେ ଯୁବଗୋଷ୍ଠୀ ମଧ୍ୟ ସେପରି ନିଜର ଆତ୍ମ ମର୍ଯ୍ୟାଦା ଲାଗି ବିଦ୍ରୋହ କରି ଚାଲିଛନ୍ତି—ଓ ପୁରୁଷମାନଙ୍କ ଅଧିକାର ଭିତରୁ ମୁକ୍ତି ପାଇବା ଲାଗି ନାରୀମାନେ ସେମିତି ଆନ୍ଦୋଳନ ଆରମ୍ଭ କରି ଦେଲେଣି—ସେଥିରୁ ଜଣାପଡ଼ୁଛି ଯେ ଆମର ସାମାଜିକ ଓ ବ୍ୟକ୍ତିଗତ ଜୀବନଧାରାରେ ନିଶ୍ଚୟ ଉନ୍ମୂଳ ବୈପ୍ଳବିକ ପରିବର୍ତ୍ତନ ଆବଶ୍ୟକ । ତା'ଛଡ଼ା ସାଧାରଣତଃ ଲୋକମାନେ ମଧ୍ୟ ସେହି ସବୁ ନିୟମ, ଗତାନୁଗତିକ ସ୍ଥାଣୁ ସାମାଜିକ ଅନୁଷ୍ଠାନ ଗୁଡ଼ିକୁ ଓ ତା'ର ନେତୃବୃନ୍ଦଙ୍କୁ ଆଉ ମାନିବାକୁ ରାଜି ନୁହନ୍ତି—କିମ୍ବା ସେମାନଙ୍କର ଅନୁଶାସନରେ ରହିବାକୁ ଚାହୁଁ ନାହାନ୍ତି— ଏବଂ ଯେଉଁସବୁ ସାମାଜିକ ମୂଲ୍ୟବୋଧ ଓ ଜୀବନାଦର୍ଶ ଉପରେ ସେହି ଅନୁଷ୍ଠାନ ଓ ନେତୃତ୍ୱ ଆଜିପର୍ଯ୍ୟନ୍ତ ପ୍ରତିଷ୍ଠିତ ରହିଥିଲା—ତା' ଉପରୁ ମଧ୍ୟ ସାଧାରଣ ମନୁଷ୍ୟର ଆସ୍ଥା ତୁଟି ଚାଲିଣି । ଏହାହିଁ ଜଣାଇ ଦେଉଛି ଯେ ମାନବସମାଜ ତାକୁ ବାନ୍ଧିରଖିଥିବା ଅନୁଷ୍ଠାନ ଗୁଡ଼ିକର ବନ୍ଦୀଶାଳାର କାନ୍ଥ ଡେଇଁ ଆଗକୁ ମାଡ଼ିଯିବାକୁ ଇଚ୍ଛା କଲାଣି । ଜୀବନପ୍ରତି ଓ ସାମାଜିକ ସଂଗଠନଗୁଡ଼ିକ ପ୍ରତି ଆମର ନୂଆ ପ୍ରକାରର ମନୋଭାବ, ଯୋଜନା, ଓ କର୍ମପନ୍ଥା ଯେପରିଭାବେ କ୍ରମଶଃ ପ୍ରକାଶିତ ହୋଇ-ଚାଲିଛି ସେ ଦିଗରେ ସଚେତନ ଓ ସକ୍ରିୟ ହେବାର ବେଳ ହୋଇଛି ବର୍ତ୍ତମାନ । ଏହି ଦୃଷ୍ଟିରୁ ହିଁ 'ଅନ୍ନ' ଓ "ଆଧ୍ୟାତ୍ମିକତା" ପରସ୍ପର ସଙ୍ଗେ ସଂଯୁକ୍ତ ସମ୍ବନ୍ଧିତ । ଯାହିଁକିନା ଅନ୍ନ ହିଁ ପ୍ରସ୍ତୁତ ହୋଇପାରିବ ଆଧ୍ୟାତ୍ମିକ ଆଡ଼କୁ ଓ ଭବିଷ୍ୟତର ରୂପରେଖ ଆଡ଼ ପ୍ରବୃତ୍ତ ହେବ ।

ପୃଥିବୀ ଯେପରିଭାବେ ବିଜ୍ଞାନ ଓ କାରିଗରୀ କୌଶଳର ପ୍ରଭାବ ଭିତରେ ବୁଡ଼ିଗଲାଣି—ଏବଂ ଆମେ ମଧ୍ୟ ସେପରି-ଭାବେ ଆମ ପରମ୍ପରା ଦ୍ୱାରା ତାଡ଼ିତ ହୋଇ ଗୋଟାଏ ଗୋଳମାଳିଆ ଅବସ୍ଥାରେ ପହଞ୍ଚିଲୁଣି—ଏଥିରେ କେଉଁ ଧରଣର "ଅନ୍ନ" ଯେ "ଆଧ୍ୟାତ୍ମିକତା" ପ୍ରଦାନ କରିବ—ସେକଥା ନିର୍ଣ୍ଣୟ କରିବା ଖୁବ୍ କଷ୍ଟକର ନିଶ୍ଚୟ । "ଅନ୍ନ" ଓ "ଆଧ୍ୟାତ୍ମିକତା" ସବୁ ଗୋଳିଆମିଶା ହୋଇଗଲାଣି—କାରଣ ଆମର ସେଇ ଜୀବନାଦର୍ଶ ଓ ସେଇ ମୂଲ୍ୟବୋଧ ଏପରି ଅବସ୍ଥାକୁ ତାଡ଼ି ଆଣିଛି—ତାହାମଧ୍ୟ ସେହିପରି ଗୋଳିଆମିଶା ହୋଇଯାଇଛି ।

ଏହି ବେଳେବେଳେ ମଧ୍ୟରେ ଆମ୍ଭେମାନେ ଯେଉଁସବୁ ବାସ୍ତବ ସମସ୍ୟାଗୁଡ଼ିକର ସମ୍ମୁଖୀନ ହେଉଛୁ—ତାହାର ସମାଧାନ ଦିଗରେ ଆମକୁ ଯେଉଁସବୁ ପନ୍ଥା ଗ୍ରହଣ କରିବାକୁ ପଡ଼ିବ—ସେ ଦିଗରେ ଅଗ୍ରସର ହେବା-ଲାଗି ଆମକୁ କ୍ରମେ କ୍ରମେ ଆମର ଏହି ଗୋଳିଆମିଶା ଚିନ୍ତାଧାରାକୁ ପ୍ରଥମରୁ ପରିଷ୍କାର କରିନେବାକୁ ହେବ । ତା'ମାନେ ଆମେ ଚିନ୍ତାକ୍ଷେତ୍ରରେ ଏକ ସରଳ ସ୍ପଷ୍ଟ ବାସ୍ତବ ଆଦର୍ଶକୁ ସ୍ଥିର କରିନେବା ଉଚିତ ।

## ଅତ୍ୟଧିକ ଚାହିଦା—ଏକ ଦୁରଭ୍ୟାସ

ପ୍ରତ୍ୟେକ ବ୍ୟକ୍ତି ଅତ୍ୟଧିକ ଭୋଗ୍ୟ ପଦାର୍ଥ ନିଜର ବ୍ୟବହାର ଲାଗି ଚାହିଁବ ନା ସର୍ବନିମ୍ନ ଆବଶ୍ୟକତା ପାଇଁ ସନ୍ତୁଷ୍ଟ ହେବ—ଏହା ନିଶ୍ଚୟ ଏ ଯୁଗରେ ଏକ ଜଟିଳ ସାମାଜିକ ଓ ମନସ୍ତାତ୍ତ୍ୱିକ ବ୍ୟାପାର । ଗତ ଶତକରେ ମାନବୀୟ ସାମ୍ୟବାଦ ଓ ସମାନ ନ୍ୟାୟ ଭିତ୍ତିକ ସମାଜରେ ପ୍ରତିଷ୍ଠା କରିବାଲାଗି ବିଶ୍ୱର ସବୁସ୍ଥାନରେ ଯେଉଁ ବିପ୍ଳବ ସଂଘଟିତ ହୋଇଥିଲା—ସେତେବେଳର ଆହ୍ୱାନ ଥିଲା ପ୍ରତ୍ୟେକ ବ୍ୟକ୍ତିକୁ ସର୍ବନିମ୍ନ ଆବଶ୍ୟକତା ପୂରଣର ସୁଯୋଗ ସୁବିଧା ଓ ଅଧିକାର ଦିଆଯାଉ । ମାତ୍ର ଏହାଥିଲା ବିପ୍ଳବର ପ୍ରଥମ ସ୍ତରର ଆହ୍ୱାନ ।

କ୍ରମଶଃ ସାମ୍ପ୍ରତିକ ଯୁଗରେ ବ୍ୟାପିଗଲା ଆଉ ଗୋଟାଏ ମନୋଭାବ । ତାହାହେଉଛି—ସର୍ବୋଚ୍ଚ ପରିମାଣରେ ଉତ୍ପାଦନ କରିବାକୁ ଓ ଯଥେଚ୍ଛା ପରିମାଣରେ ମଧ୍ୟ

ଭୋଗ କରିପାରିବ । କିନ୍ତୁ ଏକଥା ମଧ୍ୟ ସତେ ସତେ ସ୍ପଷ୍ଟ ହୋଇଥିଲା ଯେ ବହୁଳ ଉତ୍ପାଦନ ଓ ଯଥେଚ୍ଛା ଭୋଗବାଦ ମନୁଷ୍ୟ ସମାଜରେ ପରସ୍ପରକୁ ଲୁଣ୍ଠନ କରିବାରେ ପ୍ରବର୍ତ୍ତନା ଦେଉଅଛି—ଓ ତଦ୍ଦ୍ୱାରା ମନୁଷ୍ୟ ମନୁଷ୍ୟ ମଧ୍ୟରେ ଅସାମ୍ୟ ହିଁ ବଢ଼ିଚାଲିଛି ।

ସେ ଦୃଷ୍ଟିରୁ ପାଶ୍ଚାତ୍ୟରେ ଚିନ୍ତାଶୀଳ ବ୍ୟକ୍ତିମାନେ ଘୋଷଣା କଲେ ଯେ— ଯଥେଚ୍ଛା ଭୋଗବାଦ, ଅର୍ଥନୈତିକ ଓ ଉଚ୍ଛୃଙ୍ଖଳ ସାମାଜିକ ତଥା ମାନବୀୟ ମୂଲ୍ୟବୋଧ ଦୃଷ୍ଟିରୁ ଅତ୍ୟନ୍ତ ଗର୍ହିତ ବ୍ୟାପାର । କାରଣ ଏହା କେବଳ ବ୍ୟବହାର୍ଯ୍ୟ ପଦାର୍ଥଗୁଡ଼ିକର ବୃଥା ଅପଚୟ ହୋଇଁ ନୁହେଁ—ବରଂ ଏହା ପକ୍ଷରେ ତଥା ମନସ୍ତାତ୍ତ୍ୱିକ ଦୃଷ୍ଟି ମଧ୍ୟ ପାପଜନକ । ତା'ଛଡ଼ା ଆମେ ଯଦି ଯଥେଚ୍ଛା ଭୋଗକରି ଚାଲିବା—ତେବେ ନିର୍ଦ୍ଦିଷ୍ଟ ଭାବେ ଆମେ ଆଉ କେତେକ ଲୋକଙ୍କ ସ୍ୱାର୍ଥ ପ୍ରତି ଅବିଚାର ଦେବା ଏବଂ ସମାଜର ଭବିଷ୍ୟତକୁ ମଧ୍ୟ ନୈରାଶ୍ୟଜନକ ଭାବେ ବିପର୍ଯ୍ୟସ୍ତ କରିପକାଇବା ।

ଏହି ଯୁକ୍ତିଟି ଯେପରି ଯୁକ୍ତିସଙ୍ଗତ ସେହିପରି ବିଜ୍ଞାନସମ୍ମତ ମଧ୍ୟ । ଏହା କୌଣସି ବସ୍ତୁର ଅପଚୟ ରୋକିବାରେ ଓ ଅନ୍ୟାନ୍ୟ କ୍ଷେତ୍ରରେ ଯଥେଚ୍ଛା ଭୋଗପ୍ରବୃତ୍ତିକୁ ସଂଯତ କରିବାରେ ସାହାଯ୍ୟ କରିଥାଏ । ଏଥିରେ ସନ୍ଦେହ ନାହିଁ ଯେ—ଅନ୍ୟର ସୁଖ ସୁବିଧା ପ୍ରତି ଧ୍ୟାନ ନଦେଇ—କେବଳ ଅନିୟନ୍ତ୍ରିତ ଜୀବନକୁ ଯଥେଚ୍ଛା ଭାବେ ଭୋଗ କରିବାରେ ପ୍ରବୃତ୍ତି ଏକ ସ୍ୱାର୍ଥପର ସୃଷ୍ଟିକାରୀ ସଭ୍ୟତା ଓ ସଂସ୍କୃତି ଭିତରୁ ସୃଷ୍ଟି ହୋଇଛି ।

## ଲୋଡ଼ା ଏକ ଯୁକ୍ତିସମ୍ମତ ସିଦ୍ଧାନ୍ତ

ଏ ପ୍ରସଙ୍ଗରେ ଆମର ଯୁକ୍ତିଟି ବସ୍ତୁବାଦୀକ ହେବା ମଧ୍ୟ ସ୍ୱାଭାବିକ । ବାସ୍ତବ ଓ ସୂକ୍ଷ୍ମଦୃଷ୍ଟି ସହିତ ଆମକୁ ଏ ଦିଗରେ ଏକ ଗ୍ରହଣୀୟ ସଂକଳ୍ପ ନେବାକୁ ହେବ । ଯଥେଚ୍ଛା ଭୋଗବାଦୀ ସମାଜର ମନସ୍ତାତ୍ତ୍ୱିକ ପରିବର୍ତ୍ତନ ଆଣିବାକୁ ହେଲେ—ଆଗ ଗୋଟିଏ ତଥ୍ୟ ସମସ୍ତଙ୍କ ଆଗରେ ଟୋକି ଧରିବାକୁ ହେବ ଯେ ବିଜ୍ଞାନ ଓ କାରିଗରୀ କୌଶଳର ବିକାଶ ଦ୍ୱାରା ସୀମାହୀନ ପରିମାଣରେ କୌଣସି ଦ୍ରବ୍ୟର ଉତ୍ପାଦନ କରି ହୋଇପାରିବ ନାହିଁ ଏବଂ ବିଜ୍ଞାନର ମଧ୍ୟ ଏହା ଲକ୍ଷ୍ୟ ନୁହେଁ ଯେ ମନୁଷ୍ୟ ଭିତରେ ଯଥେଚ୍ଛା ଭୋଗ କାମନା ଜାଗ୍ରତ କରି ତାକୁ ଅସଂଯତ ଭାବେ ପୂରଣ କରି ଚାଲିବା । ବର୍ତ୍ତମାନ ଯେଉଁସବୁ ବିଜ୍ଞାପନ ଅତି ଚମତ୍କାର କୌଶଳ ପ୍ରୟୋଗ କରି ନଶିତ ଭାବରେ ବହୁ ପ୍ରକାର ଦ୍ରବ୍ୟର ବ୍ୟବହାର କରିବା ସପକ୍ଷରେ ପ୍ରରୋଚନା ଦେଇ ଚାଲିଛନ୍ତି—ସେ ସବୁକୁ ଆଗ ସଂଯତ କରିବାକୁ ହେବ । ପ୍ରଚାରଧର୍ମୀ ଖବରକାଗଜ, ପତ୍ର ପତ୍ରିକା ଓ ଦୂରଦର୍ଶନରେ ଯେଉଁସବୁ ବିଜ୍ଞାପନଗୁଡ଼ିକର ଛବି ସହ ବିଭିନ୍ନ ଦ୍ରବ୍ୟର ବ୍ୟବହାର ସଂପର୍କରେ ଯେଉଁସବୁ ସଫେଇ ପ୍ରଦର୍ଶନ କୌଶଳ ପ୍ରୟୋଗ କରାଯାଉଛି— ସେଗୁଡ଼ିକ ପ୍ରାୟ ସବୁ ବ୍ୟକ୍ତିଙ୍କ ଦ୍ରବ୍ୟ-ବ୍ୟବହାର-ସ୍ୱାଧୀନତାକୁ ଆକ୍ରାନ୍ତ କରୁଛନ୍ତି—ତେଣୁ ସରକାରଙ୍କର ତୀକ୍ଷ୍ଣଦୃଷ୍ଟି ପ୍ରଥମେ ସେଗୁଡ଼ିକ ଉପରେ ପଡ଼ିବା ଉଚିତ ।

ଆଉ ଗୋଟିଏ କଥା—ଜନସାଧାରଣଙ୍କର ଦ୍ରବ୍ୟ-ବ୍ୟବହାରରେ ଯେଉଁସବୁ ପ୍ରାଚୀନ ରୁଚି, ଅଭ୍ୟାସ, କାମନା ଏବଂ ସ୍ପୃହାଗୁଡ଼ିକ ପରିବର୍ତ୍ତନ କରି ସେଗୁଡ଼ିକୁ ବର୍ତ୍ତମାନର ଆଦର୍ଶ-ଅଭିମୁଖୀ କରିବା ଦିଗରେ ଦେଶର, ବୁଦ୍ଧିଜୀବୀ ଶ୍ରେଣୀ ତଥା କବି, ଲେଖକ, ନାଟ୍ୟକାର ଓ ଶିଳ୍ପୀମାନଙ୍କର ସଚେତନ ଉଦ୍ୟମ ଆବଶ୍ୟକ । ପ୍ରାଚୁର୍ଯ୍ୟ ଯେପରି— ଅପଚୟ ସେହିପରି—ଏପରି ଏକ ନୀତିବାକ୍ୟର ଅଶୁଦ୍ଧତାକୁ ପ୍ରମାଣ କରି ଦେଖାଇ ଦେବାକୁ ହେବ ।

ସଂଗଠିତ ସାମାଜିକ ଜୀବନ ସଂପର୍କରେ ଅନେକ କଥା ଚିନ୍ତା କରିବାକୁ ଅଛି ଓ ଅନେକ କାର୍ଯ୍ୟ ମଧ୍ୟ କରିବାକୁ ଅଛି । ଗୋଟିଏ ଗୋଟିଏ ରାଜ୍ୟରେ ପିଲାମାନଙ୍କର ପାଠ୍ୟ ପୁସ୍ତକ ଛପାଇବା ଲାଗି କାଗଜର ଅଭାବ ପଡ଼ୁଥିବା ବେଳେ ବିଭିନ୍ନ ରାଜ୍ୟମାନଙ୍କରେ ପଠନଯୋଗ୍ୟ ବିଷୟ କିଛି ନଥାଇ ମଧ୍ୟ ଶହ ଶହ ଦୈନିକ, ସାପ୍ତାହିକ, ପାକ୍ଷିକ ଓ ମାସିକ ପତ୍ରିକା ବହୁଳ ସଂଖ୍ୟାରେ ଛପା ଯାଉଛି, ବଣ୍ଟା ଯାଉଛି ବା ବିକ୍ରୟ କରାଯାଉଛି । ସେହିପରି ମଦଇଚ୍ଛା ସ୍ୱ ଓ ଭଜିଯାନ ଦ୍ୱାରା ଶରୀର ବ୍ୟବହାର ଅତ୍ୟଧିକ ବଢ଼ି ଯାଉଛି । ପୋଷାକପତ୍ରରେ ମଧ୍ୟ ଦିନକୁ ଦିନ ଏପରି ବାହୁଲ୍ୟ ଘଟୁଛି—ଏବଂ ଏହା ବୃଦ୍ଧ, ଯୁବା, ବାଳକ, ବାଳିକା ସମସ୍ତଙ୍କ ଭିତରେ ନୂଆ ନୂଆ ଫେସନ୍ ପ୍ରତି ଏପରି ତୀବ୍ର ଆକାଂକ୍ଷା ଓ ଲାଳସା ଦେଖା ଦେଇଛି— ଯାହା ଦେଖିଲେ ମନେ ହୁଏ—ସତେ ଯେ ଆଧୁନିକ ମଣିଷଟିର ରୁଚି ଓ ମାନସିକତା ଜୀବନର ଆଉ ଅନ୍ୟ ଦିଗଗୁଡ଼ିକ ପ୍ରତି ବୀତସ୍ପୃହ ହୋଇଗଲାଣି । ଏପ୍ରକାର ମନୋଭାବ ଖୁବ୍ ବେଶି ଉନ୍ନତ ସଂସ୍କୃତିର ପରିଚୟ ଦିଏ ନାହିଁ, ବରଂ ଫେସନ୍ ପ୍ରତି ଏହି ବାହୁଲ୍ୟ-ଏକାଗ୍ରତା ଏକ ଅଧଃପତିତ ସଂସ୍କୃତିର ପ୍ରତୀକ ହୋଇଥାଏ । ବ୍ୟକ୍ତି ପକ୍ଷରେ ମଧ୍ୟ ଫେସନ୍-ପ୍ରବଣତା ତାର ବ୍ୟକ୍ତିତ୍ୱର ଗଭୀର ବିକାଶ ପଥରେ ଗୋଟିଏ ଦିଗରୁ ଅନ୍ତରାୟ ସୃଷ୍ଟି କରେ । ତା'ର ଆତ୍ମ-ସ୍ୱାଧୀନତା ଲୋପପାଇ ସେ କେବଳ ଅନ୍ୟର ବାହ୍ୟ-ପ୍ରବର୍ତ୍ତନାର ଶିକାର ହୋଇଯାଏ ।

ଏକ ଥିଲା—ଯେତେବେଳେ କି ଲୋକେ ଗୋଟିଏ ଜିନିଷ କିଣିବାବେଳେ ତା'ର ସ୍ଥାୟିତ୍ୱ ଉପରେ ଆଗ ପ୍ରଶ୍ନ

କରୁଥିଲେ । ଏହି ଶାଢ଼ୀଟି କେତେଦିନ ଟିକିବ—ଏହି ଲଣ୍ଠନଟି କେତେଦିନ ଟେକିବ—ଏହି ଛତାଟି କେତୋଟି ଖରା ଓ ବର୍ଷା ସହିପାରିବ—ବା ଏହି କଲମଟିରେ କେତେ ପୃଷ୍ଠା ଲେଖି ହେବ—ଏଇଟା ଥିଲା ଖରିଦ୍‌ଦାରର ବଡ଼ ପ୍ରଶ୍ନ । ମାତ୍ର ବର୍ତ୍ତମାନ ଜଗତର ସ୍ଥାୟିତ୍ୱ ନୁହେଁ—ତାର ଉପରର ଚାକଚକ୍ୟ ଉପରେ ଜୋରଟା ବେଶି; ବରଂ ଜିନିଷଟି କମ୍ ଦିନ ଟେକିଲେ ଭଲ—କାରଣ ତାହେଲେ ଆଉ ଗୋଟିଏ ନୂଆ ଫେସନର ଜିନିଷ କିଣି ହେବ ।

ଯେ ଯେତେ ଏମିତି ନୂଆ ଜିନିଷମାନ କିଣି ପାରୁଛି—ଯିଏ ସେଗୁଡ଼ିକଦ୍ୱାରା ତା'ର ଘର ଭର୍ତ୍ତି କରିପାରୁଛି—ତାର ସାମାଜିକ ମର୍ଯ୍ୟାଦା ପୁଣି ଆମ ଆଖିରେ ଖୁବ୍ ବେଶି । ଆମେ ଜାଣିପାରୁନୁ—ଏହି ବସ୍ତୁ-ବାହୁଲ୍ୟ ଉପରେ ଉତ୍ପାଦନ ବାହୁଲ୍ୟକୁ ଡାକି ଆଣୁଛି ଓ ଏହି ଉତ୍ପାଦନ ବାହୁଲ୍ୟ ଉପରେ ଘୋର ଅପଚୟଜନିତ ବିପର୍ଯ୍ୟୟ ଆଡ଼କୁ ଟାଣି ନେଉଛି ସମଗ୍ର ପୃଥିବୀକୁ । ଆମେରିକା ଭଳି ସମୃଦ୍ଧ ଦେଶରେ ମଧ୍ୟ ଗୋଟିଏ ଗୋଟିଏ ଜାଗାରେ ଭଙ୍ଗା ମଟରର ସ୍ତୁପ ଦେଖି ଜାଗ୍ରତ ଅର୍ଥନୀତିଜ୍ଞମାନେ ପ୍ରମାଦ ଗଣିଲେଣି । ସେହିପରି ଆମ ଦେଶରେ ଯେକୌଣସି ବଡ଼ ସହରର ଅଳିଆଗଦା ଆଡ଼କୁ ଦୃଷ୍ଟି ପକାନ୍ତୁ—ଦେଖିବେ ଭଙ୍ଗା ଟିଣ, ପାଉଡ଼ର ଡବା, ନେଲ୍‌ପଲିସ୍ କାଚ ଇତ୍ୟାଦିର ଗଦା । କେହି କଣ କହିବ ଯେ—ଏ ପୃଥିବୀ ଚିରଦିନ ଏମିତି ଲୁହା, କୋଇଲା, କସ୍ତିନ ବା ପେଟ୍ରୋଲ ଯୋଗାଇ ଚାଲିଥିବ ନାହିଁ । ଏସବୁ ଜିନିଷ ଶୀଘ୍ର ସରିଯିବ । ସେ ଦୃଷ୍ଟିରୁ ଆମକୁ ବର୍ତ୍ତମାନ ନୂତନ ବିଚାରଧାରା ଓ ନୂତନ ମୂଲ୍ୟବୋଧକୁ ପ୍ରଚଳନ କରିବାକୁ ହେବ । "ସରଳ ଜୀବନଧାରା ସଙ୍ଗେ ଉନ୍ନତ ଚିନ୍ତାର ସଂଯୋଗ" ଭଳି ପୁରାତନ ନୀତିବାକ୍ୟଟିକୁ ପୁଣି ଥରେ ଆଧୁନିକ ମୂଲ୍ୟବୋଧର ମର୍ଯ୍ୟାଦା ଉପରେ ପ୍ରତିଷ୍ଠିତ କରିବାକୁ ହେବ ଏବଂ ଆମ୍ଭେମାନେ ଆଜିଯାଏଁ ଯେଉଁ ନକଲି ଛଦ୍ମ ମୂଲ୍ୟବୋଧ ଉପରେ ବସି ସଭ୍ୟତାର ଡଙ୍କା ପିଟୁଥିଲୁ ତାକୁ ଖୁବ୍ ଶୀଘ୍ର ବଦଳାଇ ଦେବାକୁ ପଡ଼ିବ । ଗୋଟିଏ ଦୃଷ୍ଟାନ୍ତ ଦିଆଯାଉ । ପ୍ରତିଥର ପୂଜାର ଓ ବିଭାର ଲାଗି ନୂଆ ପର୍ଦ୍ଦାମାନ ନକିଣି ଆମେ କଣ ଆମର ପୁରୁଣା ଶାଢ଼ୀ ଦ୍ୱାରା ପର୍ଦ୍ଦା ତିଆରି କରିପାରନ୍ତେ ନାହିଁ ? ଏ ବ୍ୟାପାରରେ ଧନୀ, ମଧ୍ୟବିତ୍ତ ଓ ଦରିଦ୍ର ସମସ୍ତଙ୍କର ସମାନ ରୁଚି ଓ ନୀତି ରହିବା ଉଚିତ ।

## ଏକ ସଙ୍ଗଠିତ ଅପଚୟ

ଆମର ଏଇ ଆଧୁନିକ ସଭ୍ୟସମାଜରେ କେତେପ୍ରକାର ଅପଚୟର ଲୀଳା ଚାଲିଛି—ତାକୁ ଲେଖି ବସିଲେ ମୁଣ୍ଡ ଘୂରାଇ ଯିବ । ସଭ୍ୟତା ଓ ସଂସ୍କୃତି ନାମରେ ଏକ ଯଥେଚ୍ଛ ସୁଖ ମନୋଭାବ ଭଦ୍ର ଓ ଧନୀ ସମାଜରେ କିପରି କାମ କରୁଛି, ଶୁଣିବେ କି ? ଏଇ ଧରନ୍ତୁ—ଆମର ଟୁରିଜମ୍ ବା ପର୍ଯ୍ୟଟନବାଦ ପ୍ରବୃତ୍ତି । ଯାନବାହନର ପରିମାଣାତ୍ମକ ଓ ଗୁଣାତ୍ମକ ଅଭିବୃଦ୍ଧି ଯୋଗୁଁ ବର୍ତ୍ତମାନ ଗୋଟିଏ ସ୍ଥାନର ଲୋକେ ଅନ୍ୟ ସ୍ଥାନକୁ ଅତି ସହଜରେ ଯିବା ଆସିବା କରି ପାରୁଛନ୍ତି । ସେଥିଯୋଗୁଁ ମାତ୍ର ଦୁଇବର୍ଷରେ ବାହାର ଦେଶ ବିଦେଶ ବୁଲି ବୁଲିବା ଗୋଟାଏ ଅଯଥା ମାନସିକ ପ୍ରବଣତାରେ ପରିଣତ ହୋଇଚାଲିଛି । ଏହାର ମୂଳ ଉଦ୍ଦେଶ୍ୟ ହେଲା—ଗୋଟିଏ ଅଜଣା ଜାଗାକୁ ଯାଇ ସେ ଜାଗାର ସଭ୍ୟତା, ସଂସ୍କୃତି ସଙ୍ଗେ ପରିଚିତ ହେବା—ଏବଂ ତାର ସନ୍ଦେଶ ଆଣି ନିଜ ଦେଶରେ ପ୍ରଚାର କରି ବନ୍ଧୁମାନଙ୍କୁ ସଂସ୍କୃତିକୁ ପରିପୁଷ୍ଟ କରିବାରେ ସାହାଯ୍ୟ କରିବା କିମ୍ବା ଏକ ଅଜଣା ରହସ୍ୟର ସନ୍ଧାନରେ ଦୁଃସାହସିକ ଅଭିଯାନ କରିବା କିମ୍ବା କୌଣସି ତୀର୍ଥକୁ ଗମନ କରି ବା ଦେବଦର୍ଶନ କରି ନିଜର ଚିତ୍ତଶୁଦ୍ଧି ବା ଆତ୍ମଶୁଦ୍ଧି କରିବା । ମାତ୍ର ବର୍ତ୍ତମାନ ଏହି ଯେ—ଲକ୍ଷ ଲକ୍ଷ କୋଟି କୋଟି ଅର୍ଥଶ୍ରାଦ୍ଧକରି ଦୂର ପୃଥିବୀର ଏପ୍ରାନ୍ତରୁ ସେପ୍ରାନ୍ତ ଯାଏ ଘୂରି ବୁଲୁଛନ୍ତି ବା ଉଡ଼ି ବୁଲୁଛନ୍ତି । ଏମାନଙ୍କର ଏହି ଭ୍ରମଣଲୀଳାର ପ୍ରକୃତ ଲକ୍ଷ୍ୟ କଣ ? ବହୁ ଉଦାହରଣ ଦେଇ ହେବ—ଯେଉଁଥିରେ କି ଆମେ ଜାଣିପାରିବା ଯେ ଏହା କେବଳ ଧନବନ୍ତମାନଙ୍କ ଏକ ଖିଆଲ ବିଳାସ । କେତେକ କ୍ଷେତ୍ରରେ ଏହା ଏକ ଅସ୍ଥିର ମନୋଭାବରୁ ମଧ୍ୟ ସୃଷ୍ଟି ହୋଇଥାଇ ପାରେ । କିନ୍ତୁ ପ୍ରତ୍ୟକ୍ଷ ଭାବେ ଏହାଦ୍ୱାରା କେତେ ଯାନବାହନର ଜାଳେଣି ତେଲ ଅପଚୟ ନହେଉଛି ଓ ପରୋକ୍ଷରେ କେତେ ଦ୍ରବ୍ୟର ଅପଚୟ ନ ଘଟୁଛି । ସଂସ୍କୃତିର ଆଦାନ ପ୍ରଦାନ ବା ପ୍ରାକୃତିକ କୌଣସି ନୂତନ ରହସ୍ୟର ଉଦ୍‌ଘାଟନ କିମ୍ବା ଧର୍ମଭାବ ଅର୍ଜନ କୌଣସିଟି ଲକ୍ଷ୍ୟ ଏହି ବିରାଟ ଭ୍ରମଣଲୀଳା ଦ୍ୱାରା ସାଧିତ ହେଉଛି ବୋଲି ମନେ ହୁଏ ନାହିଁ । କାରଣ ଏହି ସଂଗଠିତ ପର୍ଯ୍ୟଟନ ପଛରେ କୌଣସି ପ୍ରକାର ଆନ୍ତରିକ ସାଂସ୍କୃତିକ ପ୍ରେରଣା ରହି ନାହିଁ ।

ଏସବୁ ଦ୍ୱାରା କଞ୍ଚା ମାଲ, ଜାଳେଣି ଦ୍ରବ୍ୟ ଏବଂ ସମୟର ଘୋର ଅପଚୟ ତ ନିଶ୍ଚୟ ଆମ ଆଖିରେ ପଡ଼ୁଛି—ତା'ଛଡ଼ା ଆମ ଆଖିରେ ନ ପଡ଼ୁଥିବା ବହୁ ସମସ୍ୟା ମଧ୍ୟ ଘଟି ଯାଉଛି—ଯାହା ପ୍ରତି ଆମେ ଅନତିବିଳମ୍ବେ ସଚେତନ ନହେଲେ—ଆମର ଆସନ୍ତାକାଲିଟି ନଷ୍ଟଭ୍ରଷ୍ଟ ହୋଇ ଯିବାର ଆଶଙ୍କା ରହିଛି । ଆମର ପର୍ଯ୍ୟଟନ ବ୍ୟାପାରଟି ବର୍ତ୍ତମାନ କେବଳ ଅସ୍ଥିର ମସ୍ତିଷ୍କମାନଙ୍କର ବୃଥା ଚଞ୍ଚଳତାର ଏକ ଅର୍ଥହୀନ ଲୀଳା କହିଲେ ଅତ୍ୟୁକ୍ତି ହେବନାହିଁ ।

## ଶିକ୍ଷା ଆଉ ଗବେଷଣା କ୍ଷେତ୍ର

ଶିକ୍ଷା ଆଉ ଗବେଷଣା କ୍ଷେତ୍ରରେ ମଧ୍ୟ ଆମର ସ୍ପଷ୍ଟ ସଚେତନତାର ଆବଶ୍ୟକତା ରହିଛି । ବର୍ତ୍ତମାନ ଆମର ଯେଉଁ ଶିକ୍ଷାପଦ୍ଧତି ଚଳାଉଛୁ—ତାକୁ ଭଲଭାବେ ପର୍ଯ୍ୟବେକ୍ଷଣ କଲେ ଜଣାଯିବ ଯେ ଆମର ଛାତ୍ର, ଶିକ୍ଷକ ଓ ଅଭିଭାବକମାନଙ୍କର କେତେ ମୂଲ୍ୟବାନ ସମୟ ନଷ୍ଟ ହେଉଛି । ଏଣୁ ଶ୍ରେଣୀଗୃହଗୁଡ଼ିକରେ ବର୍ଷକୁ ଛାତ୍ରମାନେ କେତେ ସମୟ ପଢ଼ୁଛନ୍ତି ବା ଶିକ୍ଷକମାନେ କେତେ ସମୟ ପଢ଼ାଉଛନ୍ତି—ଏବଂ ଅବଶେଷ ସମୟର କପରି ଫଳପ୍ରଦ ବ୍ୟବହାର କରାଯାଇପାରେ—ସେ ସମ୍ବନ୍ଧେ ଆଜଠୁଁ ଆମକୁ ଚିନ୍ତାକରି ଯୋଜନା କରିବାକୁ ପଡ଼ିବ । କେଉଁଠି ଗାଁ ଗହଳରେ କୃଷି କ୍ଷେତ୍ରରେ ଖୋଲା ମଜୁରି ବା କର୍ଷଣ ଆମଦାନୀରେ ସାହାଯ୍ୟ କରିବା ଲାଗି ଆମେ ଆମର ଶିକ୍ଷାପ୍ରାପ୍ତ ଯୁବକଯୁବତୀମାନଙ୍କର ଉଦବୃତ୍ତ ସମୟକୁ ଲଗାଇ ପାରୁଛୁ କି ? କୋଟି କୋଟି ଟଙ୍କା ବ୍ୟୟରେ ଦେଶସାରା ଯେଉଁ ବୃହତ୍ ଶିକ୍ଷାଳୟ ଓ ସଂଗଠନମାନ ଗଢ଼ି ଉଠିଛି—ସେଥିରୁ ଦେଶ କେତେ ଫଳ ପାଉଛି—ତାର ହିସାବ ଆଜି ନିକିବା ଉଚିତ ନୁହେଁ କି ? ଆମେ ଆମର ଶିକ୍ଷା ବ୍ୟବସ୍ଥା ଦ୍ୱାରା କି ପ୍ରକାର ନାଗରିକ ଭବିଷ୍ୟତ ପାଇଁ ତିଆରି କରୁଛୁ—ଏବା ଆମର ବାଳକ ବାଳିକା ଓ ଯୁବକ ଯୁବତୀମାନଙ୍କର ମାନସିକ ଉତ୍କର୍ଷ କେତେ ପରିମାଣରେ ବଢ଼ାଇ ପାରୁଛୁଁ ତାର ହିସାବ ଆମେ ଆଜଠୁଁ ଦେଖିବା ଉଚିତ । ତଦନୁସାରେ ଆମର ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ ମଧ୍ୟ କରିବାକୁ ହେବ ଆଜଠାରୁ । ସେହିପରି ଆମର ବିଜ୍ଞାନ ଓ ଗବେଷଣା ସଂସ୍ଥାମାନଙ୍କୁ ମଧ୍ୟ ଆସନ୍ତାକାଲି ଦୃଷ୍ଟିରୁ ପରିଚାଳିତ କରିବାକୁ ହେବ । କେତେକ ଆଧୁନିକ କହନ୍ତା ଭଳି ବିଜ୍ଞାନ ଗବେଷଣା କାର୍ଯ୍ୟକୁ କେବଳ ଖିଆଲି ଦାୟିତ୍ୱହୀନଭାବେ ଚଳାଇ କେତେ କୋଟି ଟଙ୍କା ସେ ବାବଦରେ ଖର୍ଚ୍ଚ କରିଦେବା ଏକ ଅବିବେକତାର କାର୍ଯ୍ୟ, ସନ୍ଦେହ ନାହିଁ । କେଉଁ କେଉଁ ବିଷୟରେ ଆଜି ଗବେଷଣା କଲେ ଆସନ୍ତାକାଲି ତାର ବାସ୍ତବ ସଫଳତା ମିଳିବ—ଏ ସମ୍ବନ୍ଧେ ଆଜଠୁଁ ସଚେତନ ହେବାକୁ ପଡ଼ିବ ।

## ଆଗାମୀ କାଲିର ସଚେତନ ସ୍ରଷ୍ଟା

ଆମକୁହିଁ ଆଜି ହେବାକୁ ପଡ଼ିବ—ଆଗାମୀକାଲିର ସଚେତନ ସ୍ରଷ୍ଟା । ଆମେ କେବଳ ଆଜି ଲାଗି ବଞ୍ଚିବା ନାହିଁ । ଆସନ୍ତାକାଲି ଆମେ ହୁଏତ ବଞ୍ଚିବା ଅଥବା ବଞ୍ଚି ନଥିବା । କିନ୍ତୁ ଆମର ଉତ୍ତରାଧିକାରୀମାନେ ବଞ୍ଚିବେ । ଅପରିମାଣ ଦର୍ଶୀ ପିତାମାତା ଯେପରି ନିଜର ମଉଜ ମଜଲିସ୍‌ରେ ପିତୃପିତାମହ ଅର୍ଜିତ ଧନସମ୍ପତ୍ତି ଉଡ଼ାଇ ଦିଅନ୍ତି ଓ ତାଙ୍କର ପିଲାମାନେ ଅନାଥ ହୋଇ ଦାଣ୍ଡଦ୍ୱାର ଶୁଣି ପିଣ୍ଡା ହୋଇଥାନ୍ତି—ଆମେ ସେପରି ସେହିପରି କାଣ୍ଡ କାରଖାନା କରି ନ ବସୁ । ଆମକୁ ସ୍ମରଣ ରଖିବାକୁ ହେବ—ଏ ପୃଥିବୀରେ ଅସରନ୍ତି ଲୁହାଖଣିମାନ ନାହିଁ—ଅସରନ୍ତି ପେଟ୍ରୋଲ ବା କିରାସିନି ନାହିଁ । ଅସରନ୍ତି କୋଇଲା ଆମର ପାତାଳପୁରୀରେ ଗଚ୍ଛିତ ହୋଇ ରହିନାହିଁ । ବିଦ୍ୟୁତ ଶକ୍ତିର ଉତ୍ପାଦନ ଲାଗି ଆମ ହାତରେ ଅଫୁରନ୍ତ ଉତ୍ପାଦନ ଗଚ୍ଛିତ ନାହିଁ ।

ଆମକୁ ମଧ୍ୟ ସ୍ମରଣ ରଖିବାକୁ ହେବ ଏ ପୃଥିବୀରେ ଆମେ ମନଇଚ୍ଛା ଆମର ବଂଶବୃଦ୍ଧି କରି ପାରିବୁ ନାହିଁ । ଏ ପୃଥିବୀ ମଧ୍ୟ କେବଳ ମୋର ଲାଗି ଓ ମୋର ବଂଶଙ୍କ ଭୋଗ ଉପଭୋଗ ଲାଗି ତିଆରି ହୋଇ ନାହିଁ ।

ଆମକୁ ସର୍ବଶେଷରେ ସଚେତନ ହେବାକୁ ପଡ଼ିବ ଯେ ଆମେ ଆମର 'ଆଜି'କୁ ଏପରି ଭାବେ ତିଆରି କରିବା—ଯେପରିକି ତା' ଗର୍ଭରୁ ସୁନ୍ଦର ସଙ୍ଗତିପୂର୍ଣ୍ଣ ସମୃଦ୍ଧି ଓ [illegible] ନିରାପଦ 'ଆଗାମୀ କାଲି' ଟିଏ ଜନ୍ମଲାଭ କରି ପାରିବ ।

●

### ମରୁଡ଼ିଗ୍ରସ୍ତ ଅଞ୍ଚଳରେ ରାସ୍ତା ନିର୍ମାଣ ପାଇଁ ୨କୋଟି ୩୮ଲକ୍ଷ ଟଙ୍କା ଖର୍ଚ୍ଚ

ରାଜ୍ୟର ମରୁଡ଼ିଗ୍ରସ୍ତ ଅଞ୍ଚଳମାନଙ୍କରେ ପୂର୍ତ୍ତ ବିଭାଗ ତତ୍ତ୍ୱାବଧାନରେ ଯେଉଁସବୁ ରାସ୍ତା ନିର୍ମାଣ କରାଯାଉଛି, ସେ ବାବଦରେ ଗତ ଅପ୍ରେଲ ମାସଠାରୁ ଆଜିପର୍ଯ୍ୟନ୍ତ ସମୁଦାୟ ୨କୋଟି ୩୮ଲକ୍ଷ ୭୯ହଜାର ଟଙ୍କା ଖର୍ଚ୍ଚ କରାଯାଇ ସାରିଲାଣି । ଏହା ଫଳରେ ସେହିସବୁ ଅଞ୍ଚଳରେ ୨୭ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇଛି ।

ମରୁଡ଼ିଗ୍ରସ୍ତ ଅଞ୍ଚଳମାନଙ୍କରେ ବିଭିନ୍ନ ରାସ୍ତା ନିର୍ମାଣ ବାବଦରେ ଚଳିତ ବର୍ଷ ୫କୋଟି ୫୧ ଲକ୍ଷ ୭୯ହଜାର ଟଙ୍କା ବ୍ୟୟ ବରାଦ କରାଯାଇଛି ।




ଚାଲ ବନ୍ଧୁ, ଶାଲ୍ମଳୀ ଶଇଳ
କବିବର ରାଧାନାଥ ଯାଁ'ରେ ଦେଖି ହୋଇଲେ ବିହ୍ୱଳ ।
ନୁହେଁ ଆଜ ଖାଲି ତା' ଅରଣ୍ୟ
ବିକାଶ ଯୋଜନା ସାଥେ ଗଢ଼ି ଉଠେ ଜାତୀୟ ଉଦ୍ୟାନ ।
ଅନ୍ତଃପୁର ଅଭୟ କାହାଣୀ,
ସମୀର ହିଲ୍ଲୋଳେ ବନ୍ଧୁ, ଶୁଣେ ଏଠି ମୂକ ବନ ପ୍ରାଣୀ ।



# ଜାତୀୟ ଉଦ୍ୟାନ

ଶ୍ରୀ ପ୍ରଭାକର ପାଣି

( ୨ )

ଶୃଙ୍ଗ ପରେ ଅଭ୍ରଭେଦୀ ଶୃଙ୍ଗ
ପଦ୍ମଶ୍ରବା ଯେବେ ବନ୍ଧୁ, ମେଘାୟନ ଶିଖରୀ ଉତ୍ତୁଙ୍ଗ ।
ଦୁନିଆର ମିଛ ଆବିଳତା,
ସକଳ ଜଞ୍ଜାଳ, ଦାଉ, ଗରବର ନ ରହେ ପତ୍ତା ।
ଶାଶ୍ୱତର ଆଶୀର୍ବାଦ ବାଣୀ,
ପତ୍ରର ମର୍ମର ଛଳେ ଗାଉଥିବ ସବୁଜ ବନାନୀ



( ୩ )

ଏହି ଚିର-ଶସ୍ୟର ଉଦାର
ବହୁସାନ୍ଦ୍ର ସ୍ରୋତସ୍ୱିନୀ ବୁଢ଼ାବଳଙ୍ଗ, ଭଣ୍ଡନ, ଖଇରି ।
ବଳଙ୍ଗର ସଲିଳ ପ୍ରପାତ
ଶିଳା ବକ୍ଷେ ଅହରହ କରୁଥାଏ ଦାରୁଣ ଆଘାତ ।
ସହେ କି ଚିର ତରୁ ଅତ୍ୟାଚାର,
ବୃକ୍ଷସମ ଦ୍ୱେଷ ହୀନ, ଶାନ୍ତ ଶାଖା କରଇ ପ୍ରସ୍ତର ।



( ୪ )

ଗହନ ଏ ବନାନ୍ତର କୋଳେ
ଶ୍ୟାମଳିମା ସାଥେ ଶତ ମନୋହର କୁସୁମ ଦୋହଲେ ।
ଉଡ଼ଯାନ୍ତି ପକ୍ଷୀ ଦଳ ଦଳ
କୁରଙ୍ଗ କୁରଙ୍ଗୀ ଯନ୍ତ୍ର କରୁଛନ୍ତି ତୃଣର କବଳ ।
ଏଇ ଦେଖ, ନାଚେ କେକୀ, କେକା,
ଶୁକ, ଶାରୀ, ପାରାବତ ପଲ୍ ପଲ୍ ଦେଉଛନ୍ତି ଦେଖା ।

( ୫ )

'ବଡ଼ୁପାଳ' ମଞ୍ଚ ପରେ ବସି
ଝଲ୍ଲେକବା ସେବେ ବନ୍ଧୁ, ଦିନ ଶେଷେ ପୋଛିଥାଏ ଧଣୀ
ଦଳ ଦଳ ସମ୍ବର କୁରଙ୍ଗ
ବରାହ, ଗମ୍ବୁଳ ଆଦି, ନଶିଥିନୀ ନିଦ୍ରା କରି ଭଙ୍ଗ ।
ଲବଣାକ୍ତ ମୃତ୍ତିକା ଲେହନ
ଶେଷେ, ଦଳବଳଙ୍କୁ ଛପି ବାହୁଡ଼ନ୍ତି ଆପଣା ସଦନ ।



( ୬ )

ସୁବିଶାଳ ଏହି ବନ ଗିରି
ମହାବଳ ବ୍ୟାଘ୍ର, ଚିତା, ବିହରନ୍ତି ଶତ ଶତ ଜନ୍ତୁ ।
ସଥ ଭ୍ୟକ୍ତ ଏହି ମତ୍ତ ଦନ୍ତୀ
ଏକାକୀ ଭ୍ରମନ୍ତି ଦେଖ, ଭାଙ୍ଗିଯାଏ ଶାଳ ତରୁପନ୍ତି ।
ପାଗଳ ଏ ହୋଇଅଛି ଜଗ
ଘରେ ଜଳ ଜଳ ଜଳା, ଭୁଲୁ ତା'ରେ ଏ ସୁନ୍ଦର ଧାମ ।

( ୭ )

ଲାଗି ଅଛି ଉନ୍ନୟନ କାମ,
ଗିରି ବକ୍ଷେ ରାଜପଥ, ଗଢ଼ ଉଠେ ଆଗାର-ବିଶ୍ରାମ ।
ପ୍ରସାରଣି ମନ୍ଦର ନଦୀସ୍ତୁ,
ନବେ ତୋଳ ଉଠେ ଗିରି, ଅନ୍ତଃସାର ଦେଇ ପର୍ବତସ୍ତୁ ।
ଆସ ସୁଇ, ବସି ଏ ମଞ୍ଚରେ
ଦେଖ, ପ୍ରକୃତିର କୋଳେ ବନପ୍ରାଣୀ ସ୍ୱଚ୍ଛନ୍ଦେ ବିହରେ ।





ଆଦିବାସୀ ମୋ ସଇ ଭଉଣୀ
ଭୁଲିଯାଅ ପାଶୋରି' 'ଅଗଣି' ।....
ଯେ ବିଧାତା ନରରୂପେ ଦେଇଅଛୁ ଆମରେ ଜନମ
ମୂଳ ଏହୁ ବନପ୍ରାଣୀ ତା' ତୁଳୀର ସୃଷ୍ଟି ନନ୍ଦନ ।
ଜୀବହତ୍ୟା ମହାପାପ, ଜୀବନର ମୂଲ୍ୟ ଦିଅ ଧ୍ୟାନ ।
ହସି ଉଠୁ କାନନ ଉଦ୍ୟାନ ।






ଶ୍ରୀ ନୀଳମଣି ମିଶ୍ର

ଓଡ଼ିଶାରେ ତାଳପତ୍ର ପୋଥିର ପ୍ରଚଳନ ଖୁବ୍ ସମ୍ଭବତଃ ମୌର୍ଯ୍ୟ ସମ୍ରାଟ୍ ଅଶୋକଙ୍କ ସମୟରୁ ଆରମ୍ଭ ହୋଇଛି । କଳିଙ୍ଗ ବିଜୟ ପରେ ସମ୍ରାଟ୍ ଅଶୋକ ଧଉଳି ଓ ଜଉଗଡ଼ ଠାରେ ଯେଉଁ ଅଭିଲେଖ ଦୁଇଟି ଖୋଳାଇଲେ, ତା'ର ପ୍ରାରମ୍ଭିକ ଲେଖନକାର୍ଯ୍ୟ ତାଳପତ୍ରରେ ହୋଇଥିବାର ଅନୁମାନ କରାଯାଇ ପାରେ । ପରବର୍ତ୍ତୀକାଳରେ ଅର୍ଥାତ୍ ମାଠର, ଶୈଳୋଦ୍ଭବ, ଭୌମକର, ସୋମ ଓ ଗଙ୍ଗ ବଂଶର ରାଜତ୍ୱ କାଳରେ ଯେଉଁ ଦାନପତ୍ରଗୁଡ଼ିକ ଓଡ଼ିଶାର ବିଭିନ୍ନ ମନ୍ଦିର, ବ୍ରାହ୍ମଣଶାସନ ମାନଙ୍କରେ ପ୍ରଦତ୍ତ ହୋଇଥିଲା, ସେଗୁଡ଼ିକ ପ୍ରସ୍ତର ଓ ତାମ୍ର ଫଳକ ଉପରେ ଖୋଦିତ ହେବା ପୂର୍ବରୁ, ପ୍ରଥମେ ତାଳପତ୍ରରେ ଲେଖାଯାଇ ରାଜାଙ୍କ ଦ୍ୱାରା ଅନୁମୋଦିତ ହୋଇଥିବା ଅସମ୍ଭବ ନୁହେଁ, କାରଣ ସେ ଯୁଗରେ ତାଳପତ୍ର ବ୍ୟତୀତ ଓଡ଼ିଶାରେ ଲେଖନ ନିମିତ୍ତ ଅନ୍ୟ କୌଣସି ଉପାଦାନ ବ୍ୟବହୃତ ହୋଇଥିବାର ପ୍ରମାଣ ଆମର ହସ୍ତଗତ ହୋଇନାହିଁ ।

ଓଡ଼ିଶାର ଜଳବାୟୁ ଦୃଷ୍ଟିରୁ ଏଠାରେ ପାଞ୍ଚଶହ ବର୍ଷରୁ ଅଧିକକାଳ ତାଳପତ୍ର ପୋଥିଗୁଡ଼ିକୁ ସୁରକ୍ଷିତ ଅବସ୍ଥାରେ ରଖାଯାଇ ପାରିବ ନାହିଁ । ତେଣୁ ବହୁବର୍ଷରୁ ଲିଖିତ ତାଳପତ୍ର ପୋଥିଗୁଡ଼ିକ କିଛିଦିନପରେ ପୁଣିଥରେ ନକଲ୍ କରାଯିବାର ପ୍ରଥା ଏ ଦେଶରେ ପ୍ରଚଳିତ ହୋଇ ଆସୁଛି ଏବଂ ଗ୍ରନ୍ଥ ଗୁଡ଼ିକର ପୁନରୁଦ୍ଧାର ଗୋଟିଏ ଧାର୍ମିକ କାର୍ଯ୍ୟ ବୋଲି ଓଡ଼ିଶାର ଜନସାଧାରଣଙ୍କର ଏକ ବଦ୍ଧମୂଳ ଧାରଣା ।

ତାଳପତ୍ର ଲେଖନ କାର୍ଯ୍ୟ ଅତ୍ୟନ୍ତ କଷ୍ଟସାଧ୍ୟବ୍ୟାପାର । ଏଥିଲାଗି ଦୁଇହାତ, କଟୀ, ଗ୍ରୀବା, ପୃଷ୍ଠଦେଶ ଓ ଦୃଷ୍ଟିଶକ୍ତି ଉପରେ ବିଶେଷ ଚାପ ପଡ଼ିଥାଏ । ଲେଖନକାରମାନେ ଏତେ ପରିଶ୍ରମ ସ୍ୱୀକାର କରି ଖଣ୍ଡିଏ ତାଳପତ୍ର ପୋଥି ନକଲ୍ କରିବା ପରେ, ତା'ର ସୁରକ୍ଷା ଲାଗି ଜନସାଧାରଣଙ୍କୁ ନିବେଦନ କରି ଗୋଟିଏ ଶ୍ଲୋକ ପୋଥି ଶେଷରେ ଲେଖିଥାନ୍ତି ।

ଭଗ୍ନ ପୃଷ୍ଠଃ କଟୀ ଗ୍ରୀବା
ତୁଲ୍ୟା ଦୃଷ୍ଟିରଧୋମୁଖଃ ।
ଦୁଃଖେନ ଲିଖିତଂ ଗ୍ରନ୍ଥଂ
ପୁତ୍ରବତ୍ ପରିପାଲୟେତ୍ ।।

ଆର୍ଦ୍ରତାମଧ୍ୟ ତାଳପତ୍ର ପୋଥିର ବିନାଶକାରୀ ଶତ୍ରୁମାନଙ୍କ କବଳରୁ ସେଗୁଡ଼ିକୁ ରକ୍ଷା କରିବା ଲାଗି ଲେଖନକାର ସଂଗ୍ରହକାରୀଙ୍କୁ ଚେତାବନୀ ଶୁଣାଇ ଆଉ ଗୋଟିଏ ଶ୍ଲୋକ ପୋଥିର ଶେଷରେ ଲେଖିଥାନ୍ତି—

ଜଳାଦ୍ରକ୍ଷ ତୈଳା ଦ୍ରକ୍ଷ
ରକ୍ଷ ମାଂ ଶ୍ଲଥ ବନ୍ଧନାତ୍ ।
ଆଖୁଭ୍ୟଃ ପରହସ୍ତେଭ୍ୟଃ
ଏଷ ବଦତି ପୁସ୍ତକମ୍ ।।

ଲେଖନକାର ଦୁଇଟି ବିନୀତ ନିବେଦନ କରିବା ପରେ ଗୋଟିଏ ଭୟ ସୂଚକ ଶ୍ଲୋକ ଲେଖି, ଧର୍ମଭୀରୁ ଜନସାଧାରଣଙ୍କୁ ପୁସ୍ତକର ସୁରକ୍ଷା ଲାଗି ନିର୍ଦ୍ଦେଶ ଦେଇଥାନ୍ତି ।

ପୁସ୍ତକଂ ହରତେ ଯସ୍ତୁ
କାଣୋ ଦୁଃଖୀ ଭବେନ୍ନରଃ ।
ମୃତାଃ ସ୍ୱର୍ଗଂ ନ ଗଚ୍ଛନ୍ତି
ପିତସ୍ୱେନରକଂ ବ୍ରଜେତ୍ ।।

ଓଡ଼ିଶାର ତାଳପତ୍ର ପୋଥି ଗୁଡ଼ିକରେ ଏହି ଧରଣର ଶ୍ଳୋକ ପରେ ଲେଖନକାର ଲେଖାଗତ ତ୍ରୁଟିର ମାର୍ଜନା ନିମନ୍ତେ ଜନସାଧାରଣଙ୍କଠାରେ କ୍ଷମା ପ୍ରାର୍ଥନା କରିଥାନ୍ତି—

ଭୀମସ୍ୟାପି ରଣେଭଙ୍ଗୋ ।
ମୁନୀନାଂଚ ମତିଭ୍ରମଃ ।
ଯଦି ଶୁଦ୍ଧ ମଶୁଦ୍ଧଂ ବା
ମମ ଦୋଷୋ ନ ଦୀୟତେ ॥

ଅଥବା

ଶୁଦ୍ଧ ଅଶୁଦ୍ଧ ମିଶାଇ ଗାଇବ ।
ଲେଖନକାରର ଦୋଷ ନ ଧରିବ

ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରଚୁର ତାଳଗଛ ଥିବାରୁ ତାଳପତ୍ର ସଂଗ୍ରହକରି ପୋଥି ଲେଖିବା କାର୍ଯ୍ୟ ଅପେକ୍ଷାକୃତ ସହଜ । ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଅବଶ୍ୟ ତାଳପତ୍ରର ବ୍ୟବହାର ରହିଛି ; ବିଶେଷତଃ ଦକ୍ଷିଣ ଭାରତରେ ତାଳପତ୍ର ପୋଥିର ସଂଖ୍ୟା ଓଡ଼ିଶା ତୁଳନାରେ ଅଧିକ କମ ନୁହେଁ । କିନ୍ତୁ ଉତ୍ତର ପଶ୍ଚିମ ଭାରତରେ ବହୁ ପ୍ରାଚୀନ କାଳରୁ ଭୂର୍ଜବଳ୍କଳର ବ୍ୟବହାର ଥିବାର ଦେଖାଯାଏ । କେତେକ ଅଞ୍ଚଳରେ ମଧ୍ୟ 'ଲୁମ୍ବୀ' ନାମକ ବୃକ୍ଷର ବଳ୍କଳ ଉପରେ ଲେଖନ କାର୍ଯ୍ୟ କରା-ଯାଉଥିଲା । ଲୁମ୍ବୀ ବୃକ୍ଷ ଓଡ଼ିଶାର କେତେକ ଅଞ୍ଚଳରେ ମିଳୁଥିଲେ ହେଁ, ଲୁମ୍ବୀ ବଳ୍କଳ ଉପରେ ଓଡ଼ିଆ ଅକ୍ଷରରେ ଲିଖିତ ପୋଥି ଆଜିଯାଏ ମିଳିନାହିଁ । କିନ୍ତୁ ଅସମୀୟା ଅକ୍ଷରରେ ଲିଖିତ ଲୁମ୍ବୀ ବଳ୍କଳ ପୋଥି ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ହୋଇଛି ।

ଯା ହେଉ, ଅନ୍ୟାନ୍ୟ ଲେଖନର ଉପାଦାନ ତୁଳନାରେ ତାଳପତ୍ର ଉପରେ ଲିଖିତ ପୋଥି ଦୀର୍ଘସ୍ଥାୟୀ । କାରଣ ତାଳପତ୍ର ଉପରେ 'ମସି' ସାହାଯ୍ୟରେ ଲେଖା ନ ଯାଇ ଲୁହାର ଲେଖନୀ ସାହାଯ୍ୟରେ ପତ୍ର ଉପରେ ଅକ୍ଷର ଖୋଦନ କରାଯାଏ । ତେଣୁ ପତ୍ର ନଷ୍ଟ ହେବା ପର୍ଯ୍ୟନ୍ତ ଅକ୍ଷର ଗୁଡ଼ିକ ସୁସ୍ପଷ୍ଟ ରୂପେ ପଠନୋ-ପଯୋଗୀ ହୋଇଥାଏ ।

ତାଳପତ୍ର ଉପରେ ଖୋଦନ କରାଯିବା ପୂର୍ବରୁ ସେ ଗୁଡ଼ିକୁ ପ୍ରାଚୀନ ପଦ୍ଧତିରେ ଲେଖନୋପଯୋଗୀ କରାଯାଏ । ଅନ୍ୟଥା ସଦ୍ୟ ସଂଗୃହୀତ ତାଳପତ୍ରଗୁଡ଼ିକ ଉପରେ ଲେଖନୀ ଚାଳନା କରାଗଲେ, ସେଗୁଡ଼ିକ ଦୀର୍ଘସ୍ଥାୟୀ ହୋଇ ପାରେ ନାହିଁ, ତେଣୁ ନୂତନ ତାଳପତ୍ର ସଂଗ୍ରହକରି ପାଣି ଓ ପଙ୍କରେ ପୋତିବା, ଧାନ କୋଠିରେ ପୋତି ରଖିବା, ସୂର୍ଯ୍ୟତାପ ଓ କାକରରେ ରଖିବାପରେ, ସେ ଗୁଡ଼ିକୁ ନିର୍ଦ୍ଦିଷ୍ଟ ମାପରେ କାଟି ସମାନ କରାଯାଏ । ଏବଂ ଠିକ୍ ମଝିରେ ସୂତା ବାନ୍ଧିବା ଲାଗି ଗୋଟିଏ ଗୋଲାକାର ରନ୍ଧ୍ର କରାଯାଏ । ପତ୍ରଗୁଡ଼ିକୁ ସଳଖ ରଖିବା ଲାଗି ଦୁଇ ପାଖରେ ଦୁଇଖଣ୍ଡି କାଠ ପଟା ଲଗାଇ ଦିଆଯାଏ । ଏହିପରି ଅବସ୍ଥାରେ କିଛିଦିନ ରଖିବାପରେ ଲେଖକମାନେ ତା'ଉପରେ ଲେଖନୀ ଚାଳନା କରିଥାନ୍ତି । ଈଷତ୍ ହଳଦିଆ ରଙ୍ଗର ତାଳପତ୍ର ଉପରେ ଖୋଦିତ ଅକ୍ଷରଗୁଡ଼ିକ ଅଧିକ ସୁପାଠ୍ୟ ହୋଇ ନ ଥିବାରୁ, ଲେଖକମାନେ ହଳଦୀଗୁଣ୍ଡା, କଳାହୁହୁଁ ବା କେଶରଦ୍ର ପତ୍ର ରସ, ରାଶିତେଲ ଓ ଝଡ଼େଇ ପୋଡ଼ା କଳାକୁ ମିଶାଇ ଏକପ୍ରକାର ଅଞ୍ଜନ ପ୍ରସ୍ତୁତ କରି ଅକ୍ଷର ଖୋଦିତ ପତ୍ର ଉପରେ ବୋଳିଦେଇ ପୋଛି ଦିଅନ୍ତି । ତା'ଫଳରେ ଖୋଦିତ ଅକ୍ଷର ଗୁଡ଼ିକ ସୁପାଠ୍ୟ ହୋଇ ଉଠେ ।

ଓଡ଼ିଆ ଲିପି ବ୍ରାହ୍ମୀ ଲିପିର ସନ୍ତାନ ହୋଇଥିଲେ ହେଁ, ଅନ୍ୟାନ୍ୟ ଆର୍ଯ୍ୟଭାଷା ଅର୍ଥାତ୍ ହିନ୍ଦୀ, ବଙ୍ଗଳା, ଗୁଜରାଟ ପରି ଏଥିରେ ଶିରୋରେଖା ଦିଆ ନ ଯାଇ, ବର୍ଣ୍ଣମାଳାର ଉପରିଭାଗ ଗୋଲାକାର କରାଯାଇଛି । ହିନ୍ଦୀ, ବଙ୍ଗଳା, ଗୁର୍ଜର, ଗୁରୁମୁଖୀ ଓ ଶାରଦା ଲିପି ସହିତ ଓଡ଼ିଆ ଲିପିର ଯଥେଷ୍ଟ ସାମଞ୍ଜସ୍ୟ ଥିଲେ ମଧ୍ୟ, କେବଳ ଶିରୋରେଖା ସ୍ଥାନରେ ଗୋଲାକାର ହେଉଛି ଏହାର ଭିନ୍ନତା । ଏହାର କାରଣ ସ୍ୱରୂପ ଏପରି କୁହା ଯାଏ ଯେ, ଲୁହାର ନିର୍ମିତ ଲେଖନୀରେ ଶିରୋ-ରେଖା ଦେଲେ ତାଳପତ୍ର ଗୁଡ଼ିକ ଚିରି ଯିବାର ସମ୍ଭାବନା ରହିଛି । ତେଣୁ ଲେଖକମାନେ ଓଡ଼ିଆ ବର୍ଣ୍ଣମାଳାର ଉପରିଭାଗ ଗୋଲାକାର କରି ଦିଅନ୍ତି ।

ଅନ୍ୟ କେତେକ ଆଲୋଚକମାନଙ୍କ ମତରେ ଦକ୍ଷିଣ ଭାରତରେ ବହୁ ପ୍ରାଚୀନ କାଳରେ ପ୍ରଚଳିତ 'ବଟ୍ଟେଲୁତ୍ତୁ' ନାମକ ବର୍ଣ୍ଣମାଳାର ପ୍ରଭାବ ଓଡ଼ିଆ ବର୍ଣ୍ଣମାଳା ଉପରେ ପଡ଼ିଛି ; ତେଣୁ ଓଡ଼ିଆ ଲିପି ଗୁଡ଼ିକର ଆକାର ବର୍ତ୍ତୁଳା-କାର ହୋଇଛି ।

ଖ୍ରୀ: ପୂ: ୩ୟ ଶତାବ୍ଦୀ ଠାରୁ ଆରମ୍ଭ କରି ପ୍ରାୟ ଖ୍ରୀଷ୍ଟାବ୍ଦ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ତାଳପତ୍ର ଉପରେ ଅନେକ ସଂସ୍କୃତ ଗ୍ରନ୍ଥ ଲେଖାଯାଇଛି । ତନ୍ମଧ୍ୟରେ ବିଷ୍ଣୁ ଶର୍ମାଙ୍କ 'ପଞ୍ଚତନ୍ତ୍ର', ମୁରାରି ମିଶ୍ରଙ୍କ 'ଅନର୍ଘ ରାଘବ ନାଟକ', ପୁରୁଷୋତ୍ତମଙ୍କ 'ତ୍ରିକାଣ୍ଡ ଶେଷ', ଶତାନନ୍ଦଙ୍କ 'ଭାସ୍ୱତୀ', କାନ୍ତକୋମଳ ପଦାବଳୀରେ ରଚିତ ଜୟଦେବଙ୍କ 'ଗୀତଗୋବିନ୍ଦ' ପ୍ରଭୃତି ଗ୍ରନ୍ଥ ବିଶ୍ୱବାସୀଙ୍କ ଦ୍ୱାରା ଆଦୃତ ହୋଇ ଆସୁଛି ।

ତା'ପରେ ବିଭିନ୍ନ ସଂସ୍କୃତ ଓ ଓଡ଼ିଆ ଭାଷାରେ ଗ୍ରନ୍ଥମାନ ରଚିତ ହେବାକୁ ଲାଗିଲା । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ଠାରୁ ଊନବିଂଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ତନ୍ତ୍ର, ଜ୍ୟୋତିଷ, ଧର୍ମଶାସ୍ତ୍ର, ଆୟୁର୍ବେଦ, ଦର୍ଶନ, ବ୍ୟାକରଣ, ଅଭିଧାନ, ଗଣିତ, କାବ୍ୟ, ନାଟକ, ଅଳଙ୍କାର, ଶିଳ୍ପ ଓ ସଙ୍ଗୀତ ଶାସ୍ତ୍ର ଉପରେ ଓଡ଼ିଆ ବିଦ୍ୱାନଙ୍କ ଦ୍ୱାରା ବହୁ ଗ୍ରନ୍ଥ ରଚିତ ହୋଇଛି । ତନ୍ମଧ୍ୟରେ ଉଡ୍ଡୀଶ ତନ୍ତ୍ର, ଉଡ୍ଡାମରେଶ୍ୱରତନ୍ତ୍ର, ଗୋଦାବରୀ ମିଶ୍ରଙ୍କ ଶାରଦାଶରଦର୍ଣନ ପଦ୍ଧତି, ବର୍ଦ୍ଧନ ମହାପାତ୍ରଙ୍କ ଦୁର୍ଗୋତ୍ସବ ଚନ୍ଦ୍ରିକା, ଜଗନ୍ନାଥ ଅଗ୍ରଣୀଙ୍କ ଦୁର୍ଗାଭଜନ ଦୀପିକା, ରାମଚନ୍ଦ୍ର ଉଦ୍‌ଗାତାଙ୍କ ତାରିଣୀ ଭକ୍ତି ସୁଧା ତରଙ୍ଗିଣୀ. ଲକ୍ଷେଶ୍ୱର ରଥଙ୍କ 'ଜ୍ଞାନ-ବଲ୍ଲୀ ତନ୍ତ୍ର' ଓ 'ଶିବାର୍ଚ୍ଚନ ପଦ୍ଧତି, ବାସୁଦେବ ରଥଙ୍କ 'ଭୁବନେଶ୍ୱରୀ ପ୍ରକାଶ' ବୃହସ୍ପତି ମିଶ୍ରଙ୍କ 'କୃତ୍ୟ କୌମୁଦୀ', ଶମ୍ଭୁକର ମିଶ୍ରଙ୍କ 'ବୈଶ୍ୱାନରେଷ୍ଟି ପଦ୍ଧତି', ବିଦ୍ୟାକର ମିଶ୍ରଙ୍କ 'ବିଦ୍ୟାକର ପଦ୍ଧତି, ନରସିଂହ ମିଶ୍ରଙ୍କ 'ନିତ୍ୟାଗ୍ନିର ପ୍ରଦୀପ,' ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ ଦର୍ପଣ', 'ନରସିଂହ ବିଜୟ', 'ଚନ୍ଦ୍ରକଳା ନାଟିକା ଆଦି', କବି ଡିଣ୍ଡିମ ଜୀବଦେବଙ୍କ ଭକ୍ତ ଭାଗବତ ମହାକାବ୍ୟ, ଭକ୍ତବୈଭବ ନାଟକ ଆଦି. ଦିବାକର ମିଶ୍ରଙ୍କ ଭାରତାମୃତ ମହାକାବ୍ୟ ଆଦି, ରାୟ ରାମାନନ୍ଦ ପଟ୍ଟନାୟକଙ୍କ ଜଗନ୍ନାଥ ବଲ୍ଲଭ ନାଟକ, ନାରାୟଣ ଭଞ୍ଜଙ୍କ ରୁକ୍ମିଣୀ ପରିଣୟ, ରଘୂତ୍ତମ ତୀର୍ଥଙ୍କ ମୁକୁନ୍ଦ ବିଳାସ, କବି ନିତ୍ୟାନନ୍ଦ ଶିବଲୀଳାମୃତ ଓ କୃଷ୍ଣଲୀଳାମୃତ, କବି ଅନାଦିଙ୍କ ମଣିମାଳା ନାଟିକା, କୃଷ୍ଣଲୀଳା ତରଙ୍ଗିଣୀ ଓ ରାସଗୋଷ୍ଠୀ ରୂପକ, ଗଦାଧର ରାଜଗୁରୁଙ୍କ କାଳସାର, ଆୟୁରସାର ଆଦି ଗ୍ରନ୍ଥ ପରବର୍ତ୍ତୀ ସ୍ତରରେ ବିଦ୍ୱାନ୍‌ମାନଙ୍କ ଦ୍ୱାରା ଆଦୃତ ।

ସମଗ୍ର ଓଡ଼ିଶାରେ ଲକ୍ଷଲକ୍ଷ ତାଳପତ୍ର ପୋଥି ସଂରକ୍ଷିତ ହୋଇଛି । ସେଗୁଡ଼ିକ ସହର ଅଭାବରୁ କୀଟ ତଥା ଅନ୍ୟାନ୍ୟ ଧ୍ୱଂସାତ୍ମକ ପ୍ରକ୍ରିୟାରେ ଦିନକୁ ଦିନ ନଷ୍ଟ ହୋଇ ଯାଉଛି । ଧ୍ୱଂସ ମୁଖରୁ ପୂର୍ବପୁରୁଷମାନଙ୍କ ଲିଖିତ ଗ୍ରନ୍ଥଗୁଡ଼ିକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଆମ ଜାତୀୟ ସରକାର ୧୯୫୦ ମସିହାରୁ ରାଜ୍ୟ ସଂଗ୍ରହାଳୟରେ ଗୋଟିଏ ତାଳପତ୍ର ପୋଥି ବିଭାଗ ଖୋଲି, ଓଡ଼ିଶାର ସବୁ ଅଞ୍ଚଳରୁ ପୋଥି ସଂଗ୍ରହ କରିବାରେ ଲାଗିଛନ୍ତି । ଏହି ବିଭାଗର ଭାରପ୍ରାପ୍ତ ଅଧିକାରୀମାନେ ଅଦ୍ୟାବଧି ପ୍ରାୟ କୋଡ଼ିଏ ହଜାର ତାଳପତ୍ର ପୋଥି ସଂଗ୍ରହ କରି ସେଗୁଡ଼ିକୁ ବିଷୟ ଅନୁକ୍ରମେ—ବେଦ, ତନ୍ତ୍ର, ଦର୍ଶନ, ଜ୍ୟୋତିଷ, ଆୟୁର୍ବେଦ, ଗଣିତ, ଶିଳ୍ପ ଓ ସଙ୍ଗୀତ ପ୍ରଭୃତି ଛବିଶଟି ଶ୍ରେଣୀରେ ବିଭକ୍ତ କରିବା ସଙ୍ଗେ ସଙ୍ଗେ ବିବରଣୀଯୁକ୍ତ ତାଲିକା ପ୍ରସ୍ତୁତ କରିଛନ୍ତି ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ତାଳପତ୍ର ପୋଥି ବିଭାଗଟି କଲିକତାସ୍ଥିତ ଏସିଆଟିକ୍ ସୋସାଇଟି ପାଠାଗାର, ମାନ୍ଦ୍ରାଜ ସରକାରଙ୍କ ପାଣ୍ଡୁଲିପି ବିଭାଗ, ତାଞ୍ଜୋରର ସରସ୍ୱତୀ ଭବନ ପାଠାଗାର ଆଦି ପ୍ରାଚୀନ ପୋଥି ବିଭାଗର ସମକକ୍ଷ ହୋଇ-ପାରିଛି । ଏଥିରେ ସଂଗୃହୀତ ପୋଥିଗୁଡ଼ିକ ମଧ୍ୟରେ ବହୁସଂଖ୍ୟକ ଅପ୍ରକାଶିତ ଗ୍ରନ୍ଥ ଅଦ୍ୟାପି ଲୋକଲୋଚନର ଗୋଚରକୁ ଆସିନାହିଁ । ସେହି ଦୁର୍ଲଭ ଅପ୍ରକାଶିତ ଗ୍ରନ୍ଥଗୁଡ଼ିକ ଟୀକା-ଟିପ୍ପଣୀ ତଥା ବିସ୍ତୃତ ମୁଖବନ୍ଧ ସହିତ ପ୍ରକାଶନ ଲାଗି ଆମ ରାଜ୍ୟ ସରକାର ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ଗୋଟିଏ ପ୍ରକାଶନ ସଂସ୍ଥା ଖୋଲି ସ୍ୱୀ। ମଧ୍ୟରେ କେତେ ଖଣ୍ଡି ଦୁର୍ଲଭ ଗ୍ରନ୍ଥ ପ୍ରକାଶ କରିଛନ୍ତି ଏବଂ ଆଉ କେତେ ଖଣ୍ଡି ଅପ୍ରକାଶିତ ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଛନ୍ତି । ଖୁବ୍ ସମ୍ଭବତଃ ଆଗାମୀ ଦୁଇବର୍ଷ ମଧ୍ୟରେ ଆୟୁର୍ବେଦର ସାରସଂଗ୍ରହ, ଯୋଗୀଶ୍ୱର ଶାରଙ୍ଗଙ୍କର 'ଅଦ୍ଭୁତସାଗର', କବିଭୂଷଣ ଗୋବିନ୍ଦ ସାମନ୍ତରାୟଙ୍କର 'ସ୍ୱରସର୍ବସ୍ୱ' ଦିବାକର ମିଶ୍ରଙ୍କ ଅଭିନବ ଗୀତଗୋବିନ୍ଦ, ନାରାୟଣ ଭଞ୍ଜଙ୍କ 'ରୁକ୍ମିଣୀ ପରିଣୟ କାବ୍ୟ, ଲକ୍ଷେଶ୍ୱରଙ୍କ 'ଜ୍ଞାନବଲ୍ଲୀତନ୍ତ୍ର', ଗଙ୍ଗାଧର ମିଶ୍ରଙ୍କ 'କୋଶଳାନନ୍ଦ ମହାକାବ୍ୟ' ପ୍ରଭୃତି କେତେଖଣ୍ଡି ମୂଲ୍ୟବାନ ଗ୍ରନ୍ଥ ପ୍ରକାଶ ପାଇଯିବ ।

ଓଡ଼ିଆ କବି ଜୟଦେବଙ୍କ 'ଗୀତଗୋବିନ୍ଦର' ଅପ୍ରକାଶିତ 'ଶ୍ରୁତିରଞ୍ଜନୀ' ଓ 'ସର୍ବାଙ୍ଗ ସୁନ୍ଦରୀ' ଟୀକା ଦୁଇଟିକୁ ବିସ୍ତୃତ ମୁଖବନ୍ଧ ସହିତ ପ୍ରକାଶ କରିବା ଲାଗି ସରକାରଙ୍କ ପକ୍ଷରୁ ଗୋଟିଏ ସମିତି ଗଠନ କରାଯାଇଛି ।

ଓଡ଼ିଶା ରାଜ୍ୟ ସାହିତ୍ୟ ଏକାଡେମୀ ଓ ନାଟକ ଏକାଡେମୀ ପକ୍ଷରୁ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ପୋଥି ମଧ୍ୟରୁ ଗୋପୀଚନ୍ଦନ, ଲଛିମାବତୀ, ଅନଙ୍ଗରେଖା, ସଙ୍ଗୀତ-ନାରାୟଣ, ନାଟ୍ୟମନୋରମା, ଦଶଗ୍ରୀବବଧ ମହାକାବ୍ୟ ମେଘଦୂତର ବ୍ରହ୍ମପ୍ରକାଶିକା ଟୀକା ପ୍ରଭୃତି କେତେଖଣ୍ଡି ଉପାଦେୟ ପୁସ୍ତକ ପ୍ରକାଶ ପାଇଛି ।

ଏହା ବ୍ୟତୀତ ଇତି ମଧ୍ୟରେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ମଣିମାଳା ନାଟିକା ଓ ଶ୍ରୀକୃଷ୍ଣ ଲୀଳାମୃତ ଶୀର୍ଷକ ଦୁଇଟି ପୁସ୍ତକର ସମ୍ପାଦନା କରି ଉତ୍କଳ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ଦୁଇଜଣ ଗବେଷକ ଡକ୍ଟରେଟ୍ ଉପାଧିରେ ଭୂଷିତ ହୋଇଛନ୍ତି ।

ସମଗ୍ର ଓଡ଼ିଶାର ବିଭିନ୍ନ ଗ୍ରାମରେ ଆହୁରି ହଜାର ହଜାର ତାଳପତ୍ର ପୋଥି ରହିଛି । ସେଗୁଡ଼ିକୁ ସଂଗ୍ରହ କରିବା ଲାଗି ଉତ୍କଳ, ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ପକ୍ଷରୁ ପ୍ରଚେଷ୍ଟା ଚାଲିଛି ଏବଂ ନୟାଗଡ଼ ଅନ୍ତର୍ଗତ ଭିଡ଼ସୁପୁରରେ ପ୍ରତିଷ୍ଠିତ ବାଣୀନିଧି ପାଠାଗାର ପ୍ରଭୃତି ଅନୁଷ୍ଠାନ ତଥା ବହୁ ଆଗ୍ରହୀ ବ୍ୟକ୍ତି ମଧ୍ୟ ତାଳପତ୍ର ପୋଥି ସଂଗ୍ରହ କରୁଛନ୍ତି । ବିଶେଷତଃ ରାଜ୍ୟ ସାଂସ୍କୃତିକ ବ୍ୟାପାର

ବିଭାଗର ଶାସନ ସଚିବ ଶ୍ରୀଯୁକ୍ତ ଅବଧ ନାରାୟଣ ଦାସ୍ୱାମୀଙ୍କ ପ୍ରଚେଷ୍ଟାରେ ପଶ୍ଚିମ ଓଡ଼ିଶାରୁ ବେତେକ ଦୁଷ୍ପ୍ରାପ୍ୟ ତାଳପତ୍ର ପୋଥି ରାଜ୍ୟ ସଂଗ୍ରହାଳୟ ଲାଗି ସଂଗୃହୀତ ହୋଇଛି । ସେହି ମହୋଦୟଙ୍କ ପ୍ରଚେଷ୍ଟାରେ ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ଦୁର୍ଲଭ ଗ୍ରନ୍ଥଗୁଡ଼ିକର ପ୍ରକାଶନ ଲାଗି କାର୍ଯ୍ୟ ଆରମ୍ଭ ହୋଇ ପାରିଛି । ସେହି କାର୍ଯ୍ୟର ଉଦାହରଣ ସ୍ୱରୂପ ପଶ୍ଚିମ ଓଡ଼ିଶାର ପ୍ରଖ୍ୟାତ ରାଜକବି ବ୍ରଜରାଜ ସିଂହଦେଓଙ୍କ ଲିଖିତ ସମସ୍ତ କାବ୍ୟ କବିତା, 'ବ୍ରଜରାଜ ଗ୍ରନ୍ଥାବଳୀ' ନାମରେ ଶୀଘ୍ର ପ୍ରକାଶ ପାଉଛି ।

ଓଡ଼ିଶାର ତାଳପତ୍ର ପୋଥିଗୁଡ଼ିକ ମଧ୍ୟରେ ଗୋଟିଏ ବିଶେଷ ଆକର୍ଷଣୀୟ ବିଷୟ ହେଉଛି—ଚିତ୍ରିତ ତାଳପତ୍ର ପୋଥି । ରାଜ୍ୟ ସଂଗ୍ରହାଳୟ ପକ୍ଷରୁ ଶତାଧିକ ଚିତ୍ରିତ ତାଳପତ୍ର ପୋଥି ସଂଗୃହୀତ ହୋଇ ଗୋଟିଏ ଗ୍ୟାଲେରୀରେ ପ୍ରଦର୍ଶିତ ହୋଇଛି । ଏହି ପୋଥିଗୁଡ଼ିକ ମଧ୍ୟରେ ଗୋଟିଏ ପତ୍ରରେ ଲିଖିତ 'ବିଷ୍ଣୁ ସହସ୍ର ନାମ', ଦଶାବତାର ଚିତ୍ରାବଳୀ ତାଳପତ୍ରମାଳାରେ ଲିଖିତ ଶ୍ରୀମଦ୍ ଭାଗବତ ଗୀତା ଓ ଗୀତଗୋବିନ୍ଦ, ରଙ୍ଗିନ୍ ଚିତ୍ର ସମ୍ବଳିତ 'ଅମରୁଶତକ' ଭୂଷାହରଣ, ଚିତ୍ର କାବ୍ୟ ବନ୍ଧୋଦୟ, କନ୍ଦର୍ପରଥ ଆଦି ଦେଶ ବିଦେଶର ଦର୍ଶକମାନଙ୍କ ଦୃଷ୍ଟି ଆକର୍ଷଣ କରୁଛି । ତନ୍ମଧ୍ୟରେ 'ଅମରୁଶତକ' ରେ ଥିବା ରଙ୍ଗିନ୍ ଚିତ୍ରଗୁଡ଼ିକ ରାଜ୍ୟ ଲଳିତକଳା ଏକାଡେମୀ ପକ୍ଷରୁ ପ୍ରକାଶ କରିବାର ପଦକ୍ଷେପ ନିଆଯାଇଛି ।

ଆମ ରାଜ୍ୟରେ ମିଳୁଥିବା ଚିତ୍ର ପୋଥିଗୁଡ଼ିକର ପ୍ରକାଶନ ଅତ୍ୟନ୍ତ ବ୍ୟୟସାପେକ୍ଷ । ତଥାପି ଯଦି ସହଜରେ ସେଗୁଡ଼ିକୁ ପ୍ରକାଶ କରାଯିବ, ଆମ ଦେଶର ପ୍ରାଚୀନ ଚିତ୍ରକଳା ବିଦେଶରେ ସମାଦୃତ ହେବା ସଙ୍ଗେ ସଙ୍ଗେ ଆମ ଦେଶ ବହୁ ବୈଦେଶିକ ମୁଦ୍ରା ଅର୍ଜନ କରିପାରିବ, ସନ୍ଦେହ ନାହିଁ ।*

* ଏହି ପ୍ରବନ୍ଧର ଏକ ସଂକ୍ଷିପ୍ତ ଅଂଶ କଟକ ବେତାର କେନ୍ଦ୍ରରୁ ପ୍ରସାରିତ ହୋଇଛି ।

## ଗୁଡ଼ ଓ ଖଣ୍ଡସାରୀ ଶିଳ୍ପ ପାଇଁ ଆର୍ଥିକ ସାହାଯ୍ୟ

ଗୁଡ଼ ଓ ଖଣ୍ଡସାରି ଉତ୍ପାଦନପାଇଁ ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ ଅଧୀନରେ ଥିବା ରାଜ୍ୟର ୩୮ଟି ଗୁଡ଼-ଖଣ୍ଡସାରି ସମବାୟ ସମିତିକୁ ଚଳିତ ଆର୍ଥିକ ବର୍ଷରେ ୧,୩୮,୬୦୦ ଟଙ୍କା ଋଣ ଆକାରରେ ଏବଂ ୪୭,୨୫୦ ଟଙ୍କା ସାହାଯ୍ୟ ଆକାରରେ ଯୋଗାଇ ଦେବାକୁ ରାଜ୍ୟ ଖଦି ବୋର୍ଡ ସ୍ଥିର କରିଛନ୍ତି ।

ଗତବର୍ଷ ଏହି ସମିତିଗୁଡ଼ିକୁ ୭୫,୦୦୦ ଟଙ୍କା ଋଣ ଓ ୧୦,୦୦୦ ଟଙ୍କା ସାହାଯ୍ୟ ଆକାରରେ ବୋର୍ଡ ତରଫରୁ ଯୋଗାଇ ଦିଆଯାଇଥିଲା । ଏହି ସମସ୍ତ ମଧ୍ୟରେ ୮.୫୦ଲକ୍ଷ ଟଙ୍କାର ଗୁଡ଼ ଓ ଖଣ୍ଡସାରି ଉତ୍ପାଦନ ହୋଇଥିଲା ଓ ପୂର୍ବରୁ ସଞ୍ଚିତ ଥିବା ଷ୍ଟକ୍‌କୁ ମିଶାଇ ୮.୭୩ ଲକ୍ଷ ଟଙ୍କା ମୂଲ୍ୟର ଗୁଡ଼ ଓ ଖଣ୍ଡସାରି ବିକ୍ରୟ ହୋଇଥିଲା । ଏହି ଶିଳ୍ପରେ ୮୧୬ ଜଣଙ୍କୁ ନିଯୁକ୍ତି ଦିଆଯାଇ ସେମାନଙ୍କୁ ୭୩,୦୦୦ ଟଙ୍କା ମଜୁରି ବାବଦରେ ଦିଆ ଯାଇଥିଲା ।

ଆଧୁନିକ ପଦ୍ଧତିରେ ଆଖୁ ରସ ମେସିନ୍ ସାହାଯ୍ୟରେ ବାହାର କରାଯାଉଛି ଓ ଉତ୍କୃଷ୍ଟ ଗୁଡ଼-ଖଣ୍ଡସାରି ତିଆରି ପାଇଁ ସମିତିମାନଙ୍କୁ ସାହାଯ୍ୟ କରିବା ସକାଶେ ବୋର୍ଡ ତରଫରୁ ସୁପରଭାଇଜରମାନେ ନିଯୁକ୍ତ ହୋଇଛନ୍ତି ।

## ଶ୍ରମିକମାନଙ୍କ ସ୍ୱାର୍ଥରକ୍ଷା ପାଇଁ ପୂର୍ତ୍ତ ବିଭାଗର ତତ୍ପରତା

ଠିକାଦାରମାନଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କୁ ପୂର୍ତ୍ତ ବିଭାଗ ଦ୍ୱାରା ନିର୍ଦ୍ଧାରିତ ହାରରେ ମଜୁରି ଦେବାପାଇଁ ଯେଉଁ ବ୍ୟବସ୍ଥା ରହିଛି, ତାକୁ କଡ଼ାକଡ଼ି ଭାବରେ କାର୍ଯ୍ୟକାରୀ କରିବାକୁ ରାଜ୍ୟ ସରକାରଙ୍କ ପୂର୍ତ୍ତ ବିଭାଗ ସମ୍ପୃକ୍ତ ଅଫିସରମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଯେଉଁ ଠିକାଦାର ସର୍ବନିମ୍ନ ମଜୁରି ଆଇନ ଅନୁସାରେ ଶ୍ରମିକମାନଙ୍କୁ ନିର୍ଦ୍ଧାରିତ ହାରରେ ମଜୁରି ଦେଉ ନଥିବାର ଅଭିଯୋଗ ହେବ, ତାଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ଏପରି କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ ପାଇଲେ ନିର୍ବାହୀ ଯନ୍ତ୍ରୀ ଠିକାଦାରଙ୍କ ପାଉଣାରୁ କାଟି ସମ୍ପୃକ୍ତ ଶ୍ରମିକଙ୍କୁ ତାଙ୍କର ପ୍ରାପ୍ୟ ଦେବାର ବ୍ୟବସ୍ଥା କରିବେ ।



**ଶ୍ରୀ ଦୁର୍ଗା ପ୍ରସନ୍ନ ମିଶ୍ର**

ବିଲାତର ମହାରାଣୀ ଏଲିଜାବେଥ ଗତ ୧୯୭୫ ମାର୍ଚ୍ଚ ୪ ତାରିଖରେ ଚାର୍ଲିଚାପଲିନଙ୍କୁ 'ନାଇଟ୍' ପଦବୀରେ ଭୂଷିତ କରିଛନ୍ତି । ୮୫ ବର୍ଷ ବୟସ୍କ ଚାର୍ଲିଚାପଲିନ ଏହି ଉପଲକ୍ଷେ ନିଜର ପତ୍ନୀ 'ଉନା ଓ' ନିଲ୍' ଓ ପୁତ୍ରମାନଙ୍କ ସହିତ ବିଲାତ ଯାଇଥିଲେ । ଲଣ୍ଡନର ୱାଲୱାର୍ଥ ହେଉଛି ତାଙ୍କର ଜନ୍ମଭୂମି । ୧୮୮୯ ମସିହା ଅପ୍ରେଲ ୧୬ ତାରିଖ ହେଉଛି ତାଙ୍କର ଜନ୍ମ ତାରିଖ । ସେ ଆମେରିକାରେ ପ୍ରାୟ ୫୦ ବର୍ଷ କାଳ ବାସକରିଥିଲେ ଏବଂ ସେଠାରେ ଏକାଉଣ୍ଟେସ୍ ଫ୍ରମ୍ ହଂକଂ ବ୍ୟତୀତ ନିଜର ଆଉସବୁ ଫିଲ୍ମ ତିଆରି କରିଥିଲେ । ଗତ ୧୪ ବର୍ଷ ହେଲା ସେ ସ୍ୱିଜରଲ୍ୟାଣ୍ଡରେ ବାସ କରି ଆସୁଛନ୍ତି । ଜେନେଭା ସରୋବର କୂଳରେ ତାଙ୍କର ବାସଭବନ ଅବସ୍ଥିତ । ସେ ଦଶଗୋଟି ସନ୍ତାନର ଜନକ । ତାଙ୍କୁ ଯେତେବେଳେ ମାତ୍ର ୭୨ ବର୍ଷ ହୋଇଥିଲା, ସେତେବେଳେ ତାଙ୍କର ଦଶମ ସନ୍ତାନ ଜନ୍ମଗ୍ରହଣ କରିଥିଲା । 'ଉନା' ତାଙ୍କର ଚତୁର୍ଥ ପତ୍ନୀ । ୧୯୪୩ରେ ସେ ତାଙ୍କୁ ବିବାହ କରିଥିଲେ । 'ଉନା' ଆମେରିକାର ନାଟ୍ୟକାର ୟୁଜନେ ଓ ନିଲଙ୍କ ଦୁହିତା । ଚାପଲିନଙ୍କୁ 'ନାଇଟ' ପଦବୀ ମିଳିବା ପରେ ସେ ଆଉ ଗୋଟିଏ ଫିଲ୍ମ ନିର୍ମାଣ କରିବାପାଇଁ ଘୋଷଣା କରିଥିଲେ । ବହୁକାଳ ଅତିବାହିତ ହେବାପରେ ସେ ୧୯୬୭ ମସିହାରେ ଏକାଉଣ୍ଟେସ ଫ୍ରମ୍ ହଂକଂ ଫିଲ୍ମ ନିର୍ମାଣ କରିଥିଲେ । ଏହି ଚିତ୍ରରେ ମେର୍ଲିନବ୍ରାଣ୍ଡୋ ଓ ସୋଫିୟାଲରେନ ଅଭିନୟ କରିଥିଲେ । ଏହି ଚିତ୍ରରେ ଚାପଲିନ ଅଳ୍ପ ସମୟ ପାଇଁ ଆବିର୍ଭୂତ ହୋଇଥିଲେ ।

ତାଙ୍କର ଆଉ ଗୋଟିଏ ଫିଲ୍ମ ତିଆରି କରିବାରେ ଅଭିଳାଷ ପୂରଣ ହୋଇପାରିଲେ ସେ କେବେ ତହିଁରେ ଅଭିନୟ କରିବେ କି ନାହିଁ ତାହା ଜଣାନାହିଁ । କିଛିଦିନ ତଳେ ସେ କହିଥିଲେ, "ମୋର ଅଭିନୟ କରିବାର ଦିନ ସରିଯାଇଛି । ମୋ ଚେହେରାରେ ଆଉ ଏ ସବୁ ଫୁଟାଇବାକୁ ମୁଁ ଚାହେଁ ନାହିଁ"।

ଚାର୍ଲିଚାପଲିନ ବିଂଶଶତାବ୍ଦୀର ପ୍ରଖ୍ୟାତ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ । ଚଳଚ୍ଚିତ୍ର ଜଗତର ସେ ମହାଗୁଣୀ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବର୍ଣ୍ଣାର୍ଡ଼ ଶ', ଆଲବର୍ଟ ଆଇନଷ୍ଟାଇନ୍‌, ସେର୍ଗେଇ ଆଇଜେନଷ୍ଟାଇନ, ଉଇନଷ୍ଟନ ଚର୍ଚ୍ଚିଲ, ଏଚ. ଜି. ୱେଲସ୍ ପ୍ରଭୃତି ଓ ପିକାସୋ ପ୍ରମୁଖ ବ୍ୟକ୍ତିମାନେ ତାଙ୍କ ପ୍ରତିଭାର ଭୂୟସୀ ପ୍ରଶଂସା କରି ଯାଇଛନ୍ତି । ଏମାନେ ସମସ୍ତେ ତାଙ୍କର ସମସାମୟିକ ବ୍ୟକ୍ତି ବା ତାଙ୍କର ବନ୍ଧୁ ଓ ପରିଚିତ ଥିଲେ । ଚାର୍ଲିଙ୍କ କୃତିତ୍ୱ କେବେହେଲେ ବିବାଦର ବସ୍ତୁ ନ ଥିଲା । ଏବେ ବି ତାଙ୍କର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରହିଛି । ବିଭିନ୍ନ ଦେଶରେ ଆୟୋଜିତ ଆନ୍ତର୍ଜାତୀୟ ଫିଲ୍ମ ସମାରୋହରେ ତାଙ୍କଦ୍ୱାରା ପ୍ରସ୍ତୁତ ସମସ୍ତ ଫିଲ୍ମ ପ୍ରଦର୍ଶନ କରିବାପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରି ଆୟୋଜକ ଗୌରବ ଅନୁଭବ କରୁଛନ୍ତି ଏବଂ ପୃଥିବୀର ପ୍ରଥମ ଶ୍ରେଣୀର ଚଳଚ୍ଚିତ୍ର ନିର୍ମାତାମାନେ ବାରମ୍ବାର ତାଙ୍କ ଦ୍ୱାରା ନିର୍ମିତ ଫିଲ୍ମ ଦେଖୁଛନ୍ତି । ବେଳେ ବେଳେ ପୃଥକ ଭାବେ ବା ଏକ ସମୟରେ ସମାନ୍ତର ଭାବେ ଚଳଚ୍ଚିତ୍ର ଉତ୍ସବର ଆୟୋଜନ କରୁଥିବା ନୂଆ ଚଳଚ୍ଚିତ୍ର ପ୍ରଦର୍ଶକମାନେ ମଧ୍ୟ ତାଙ୍କର କୃତିତ୍ୱର ଭୂୟସୀ ପ୍ରଶଂସା କରୁଛନ୍ତି । ଚାପଲିନ ତାଙ୍କ ଜୀବନରେ ତାଙ୍କର ଦୁଃଖମୟ ବାଲ୍ୟକାଳ ବିଷୟ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି, "କଳା ଏପରି ଗୋଟିଏ ଶବ୍ଦ ଯାହା କି ବାଲ୍ୟକାଳରେ ମୋର ମସ୍ତିଷ୍କ ବା ଶବ୍ଦଜ୍ଞାନର ପରିସର ଭିତରକୁ ଆସି ନ ଥିଲା । କେବଳ ଅଭିନୟ ପ୍ରଦର୍ଶନ ମୋର ରଙ୍ଗମଞ୍ଚକୁ ଆସିବାର ମୂଳ ଉଦ୍ଦେଶ୍ୟ ଥିଲା ।" ସେ ଯେତେବେଳେ ମାତ୍ର ପାଞ୍ଚବର୍ଷ ବୟସର ପିଲା, ସେତେବେଳେ ସେ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହୋଇ ଦର୍ଶକମାନଙ୍କର ଚକ୍ଷୁକର୍ଣ୍ଣର ବିବାଦ ଭଞ୍ଜନ କରିବାକୁ ସମର୍ଥ ହୋଇଥିଲେ । ତାଙ୍କର ମା' ମଧ୍ୟ ସୁଗାୟିକା ଥିଲେ, ରଙ୍ଗମଞ୍ଚ କଳାକାର ଥିଲେ । ଲଣ୍ଡନର ରଂଗମଞ୍ଚରେ ( ତାଙ୍କ ମା' ) ଥରେ ସଂଗୀତ ପରିବେଷଣ କରୁଥିବାବେଳେ ହଠାତ୍ ତାଙ୍କର ସ୍ୱର ଭଙ୍ଗ ହୋଇ କିଛି ଶୁଣାଗଲା ନାହିଁ । ଏଥିରେ ଦର୍ଶକମାନେ ପ୍ରଥମେ ହସିବାକୁ ଲାଗିଲେ ଓ ପରେ ପାଟିଗୋଳ କଲେ । ତାଙ୍କ ମା' ହତାଶ ଓ ଅପମାନିତ ବୋଧ କରି ରଙ୍ଗମଞ୍ଚରୁ ଚାଲିଗଲେ । ଏହାଦେଖି ମଞ୍ଚପରିଚାଳକ କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ପଡ଼ିଲେ ଏବଂ ଚାପଲିନଙ୍କୁ ରଙ୍ଗମଞ୍ଚକୁ ଯାଇ କୌଣସି ପ୍ରକାରେ ଦର୍ଶକମାନଙ୍କୁ ଶାନ୍ତ କରିବାପାଇଁ ଅନୁରୋଧ କଲେ । ସେ ଚାପଲିନଙ୍କୁ ନିଜ ମା'ଙ୍କ ସାଙ୍ଗସାଥୀଙ୍କ ଆଗରେ ଗୀତଗାଇ ଅଭିନୟ କରି ସେମାନଙ୍କର ମନୋରଞ୍ଜନ କରିଥିବାର ଦେଖିଥିଲେ । ଚାର୍ଲିନ ମଞ୍ଚଉପରକୁ ଆସି ଏପରି ଅଭିନୟ ଓ କୌତୁକ କଲେ ଯେ ତାହା ଦେଖି ଦର୍ଶକମାନେ ମଞ୍ଚଉପରେ ପଇସା ବୃଷ୍ଟି କରିବାକୁ ଲାଗିଲେ । ସେ ନିଜର ଦାବୀ ହାସଲ କରିବା ବିଷୟରେ ବଡ଼ ସତର୍କ ଓ ସୁଚତୁର ଥିଲେ । ତେଣୁ ସେ ହଠାତ୍ ଗୀତ ବନ୍ଦ କରି ଦେଇ ଦର୍ଶକମାନଙ୍କୁ କହିଲେ ଯେ ମୁଁ ପ୍ରଥମେ ପଇସା ଗୋଟାଇ ନିଏ, ତାହାପରେ ଯାଇ ମୋର ଅଭିନୟ ପ୍ରଦର୍ଶନ କରିବି । ମ୍ୟାନେଜର ଖଣ୍ଡିଏ ରୁମାଲ ଧରି ମଞ୍ଚ ଉପରକୁ ଆସିଲେ ଓ ପଇସା ଗୋଟାଇବାରେ ଚାପଲିନଙ୍କୁ ସାହାଯ୍ୟ କଲେ । ମ୍ୟାନେଜର ପଇସାଗୁଡ଼ିକ ନେଇ ତାଙ୍କ ମା' ପାଖରେ ଦେଇଦେଲେ । ଏହାପରେ ଚାପଲିନ ମଞ୍ଚ ଉପରକୁ ଆସି ଗାନ ଆରମ୍ଭ କଲେ । ସେ ନାଚ, ଗୀତ ଓ ବିଭିନ୍ନ ପ୍ରକାର ଅଙ୍ଗଭଙ୍ଗୀ ଦେଖାଇ ଦର୍ଶକମାନଙ୍କୁ ବହୁ ସମୟ ମନ୍ତ୍ରମୁଗ୍ଧ କରି ରଖିଲେ । ଶେଷରେ ଚାପଲିନଙ୍କ ମା' ପୁଅକୁ ନେଇ ଯିବାପାଇଁ ଆସିବାର ଦେଖି ଦର୍ଶକମାନେ ତାଳି ମାରି ତାଙ୍କୁ ସ୍ୱାଗତ କଲେ । ମଞ୍ଚ ଉପରେ ତାଙ୍କୁ ଦିଆଯାଇଥିବା ଅଭିନନ୍ଦନ ତାଙ୍କ ପକ୍ଷରେ ଶେଷ ଅଭିନନ୍ଦନ ଥିଲା । କାରଣ ଅତି ଦୁଃଖର କଥା ଯେ ତାଙ୍କର ସ୍ୱରଭଙ୍ଗ ଆଉ ଜୀବନସାରା ଦୂର ହୋଇ ପାରିଲା ନାହିଁ ।

ଚାପଲିନଙ୍କ ମା'ଙ୍କର ସ୍ୱର ଭଙ୍ଗ ହେବାପରେ ତାଙ୍କର ଅନ୍ନ ସଂସ୍ଥାନର କୌଣସି ଉପାୟ ରହିଲା ନାହିଁ । ତାଙ୍କୁ ନୈରାଶ୍ୟ ମଧ୍ୟରେ କାଳ କାଟିବାକୁ ପଡ଼ିଲା । ତାଙ୍କର ମନ କ୍ରମେ ଧର୍ମ ଆଡ଼କୁ ଗଲା । ତାଙ୍କର ଦୁଇ ପୁଅ ଥିଲେ— ଚାପଲିନ କନିଷ୍ଠ ପୁଅ ଓ ସିଡ଼ନି ଜ୍ୟେଷ୍ଠପୁତ୍ର । ସେ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ ଯେ ସେମାନେ ଦାରିଦ୍ର୍ୟର ଶିକାର ହୋଇ ରହିବେ ନାହିଁ । ସେ ନିଜର ଗହଣାଗାଣ୍ଠି ଓ ପୋଷାକ ପରିଚ୍ଛଦ ବିକି ଗୁଜୁରାଣ ମେଣ୍ଟାଇବାକୁ ଲାଗିଲେ । କିଛିଦିନ ପୂର୍ବରୁ ସେ ନିଜର ସ୍ୱାମୀଙ୍କୁ ଛାଡ଼ପତ୍ର ଦେଇ ସାରିଥିଲେ । ସେମାନେ ତିନି ପ୍ରକୋଷ୍ଠ ବିଶିଷ୍ଟ ଆଡ଼ମ୍ବରପୂର୍ଣ୍ଣ ଘର ଛାଡ଼ି ଦୁଇ ପ୍ରକୋଷ୍ଠ ବିଶିଷ୍ଟ ଘରେ ରହିଲେ ଓ ପରେ ଏକପ୍ରକୋଷ୍ଠ ବିଶିଷ୍ଟ ଘରେ ରହିଲେ । ଏହିପରି ଅବସ୍ଥା ଭିତରେ ଚାପଲିନଙ୍କ ମା' ରଙ୍ଗମଞ୍ଚ ପାଇଁ ତିଆରି ହୋଇଥିବା ନିଜର ପୋଷାକକୁ କାଟି ନିଜ ପୁଅପାଇଁ ପୋଷାକ ତିଆରି କଲେ । ଚାପଲିନ ଏହି ପୋଷାକ ପିନ୍ଧି ସ୍କୁଲ ଗଲାବେଳେ ତାଙ୍କର ସହପାଠୀମାନେ ତାଙ୍କୁ ଥଟ୍ଟାପରିହାସ କରୁଥିଲେ । ତାଙ୍କୁ ଆଉ ଗୋଟିଏ ଦାରୁଣ ବିପଦର ସମ୍ମୁଖୀନ ହେବାକୁ

ପଡ଼ୁଥିଲା । ତାଙ୍କର ମା' ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ତାଙ୍କୁ ହାସପାତାଳରେ ଭର୍ତ୍ତି କରାଗଲା । ଡାକ୍ତର କହିଲେ ଯେ ପୁଷ୍ଟିକର ଖାଦ୍ୟ ଅଭାବରୁ ତାଙ୍କର ମା'ଙ୍କର ସ୍ୱାସ୍ଥ୍ୟରେ ଅବନତି ଘଟିଛି । ମା'ଙ୍କୁ ହାସପାତାଳରେ ଭର୍ତ୍ତି କରି ଦେଇ ସିଡ୍ନି ଓ ଚ୍ୟାପଲିନ ନିଜର ପିତା ଓ ସାବତ ମାତାଙ୍କ ପାଖରେ ରହିବାକୁ ଲାଗିଲେ ।

ଚ୍ୟାପଲିନ ଓ ତାଙ୍କର ବଡ଼ଭାଇ ସିଡ୍ନି କିଛି ଦିନ କଲିନ୍ସ ନାଟକ କମ୍ପାନୀରେ ଯୋଗ ଦେଇ ଗୌଣ ଭୂମିକାରେ ଅଭିନୟ କରି ପେଟପୋଷିବାକୁ ଲାଗିଲେ । ଏହି ପେଶାରେ ଥିବାବେଳେ ଯେମାନେ ସେଥିରୁ ବାହାରି ଆସିବା ଏକ ଅସମ୍ଭବ କଥା ଥିଲା । ଚ୍ୟାପଲିନ ଜଣେ ଶ୍ରେଷ୍ଠ ବିଖ୍ୟାତ ହାସ୍ୟ ଅଭିନେତା ହେବାର ଉଚ୍ଚାକାଂକ୍ଷା ପୋଷଣ କରୁଥିଲେ । ବିଲାତରେ ବ୍ରାଡ୍ଲି ନାମକ ଜଣେ ଯୁବକଙ୍କ ସାହଚର୍ଯ୍ୟରେ ନିଜର ଗୋଟିଏ ଗୋଷ୍ଠୀ ଗଠନ କରିବାର ସ୍ୱପ୍ନ ସେ ଦେଖିଥିଲେ । ଏହି ଗୋଷ୍ଠୀର ନାମ ବ୍ରାଡ୍ଲି ଓ ଚ୍ୟାପଲିନ କୋଟିପତି ହାସ୍ୟ ଅଭିନେତା" ରଖିବା ପାଇଁ ଓ ଦାମିକା ପୋଷାକ ଓ ବଡ଼ ସମ୍ବୁଢ଼ ପିନ୍ଧିବା ପାଇଁ ସେ ମନସ୍ଥ କରିଥିଲେ । ଯୌବନ ଆରମ୍ଭରେ ଚ୍ୟାପଲିନ ଗୋଟିଏ ନାଟକମଣ୍ଡଳୀ ସହିତ ଆମେରିକା ଯାତ୍ରା କରିଥିଲେ । ଆମେରିକା କେତେକ ସହର ପରିଭ୍ରମଣ କରି ସାରିବା ପରେ ସେ ସେଠାରେ କିଛି ଦିନ ସୁଯୋଗ ଅପେକ୍ଷାରେ ରହିବେ କି ବିଲାତ ଫେରିଯିବେ ତାହା ଠିକ୍ କରିପାରି ନ ଥିଲେ । ଏହି ସମୟରେ ଗୋଟିଏ ପ୍ରଶ୍ନ ତାଙ୍କର ମନକୁ ଆନ୍ଦୋଳିତ କରିବାକୁ ଲାଗିଲା । ବାଲ୍ୟକାଳରୁ କଷ୍ଟରେ ଜୀବନଯାପନ କରିବାକୁ ପଡ଼ିଥିବାରୁ ସେ ଅର୍ଥ ସଞ୍ଚୟ କରିବାରେ ଅଭ୍ୟସ୍ତ ହୋଇ ଯାଇଥିଲେ । ତେଣୁ ତାଙ୍କ ପାଖରେ ଯଥେଷ୍ଟ ପଇସା ଥିଲା । ସେ ନିଜେ କହୁଥିଲେ ଯେ ମୁଁ ଯେଉଁ ପଇସା ସଞ୍ଚିଛି, ତାକୁ ମୋତେ ହିଁ ଖର୍ଚ୍ଚ କରିବାକୁ ହେବ । ଦିନେ ସେ ଗୋଟିଏ ହୋଟେଲରେ ପହଞ୍ଚିଲେ । ସେ ଲେଖିଛନ୍ତି—ହୋଟେଲରେ ମୁଁ ମୁଣ୍ଡ କୁଣ୍ଢାଇଲି, ଗାଉନ୍ ପିନ୍ଧିଲି । ମୁଁ ଭାବିଲି ଯେ ହୋଟେଲରେ ମୁଁ ଯେଉଁ ସାଢ଼େ ତିନି ଡଲାର ଦେଉଛି, ତହିଁର ପ୍ରତ୍ୟେକ କଡ଼ାକର କଡ଼ା ଆରାମ କରି ମୁଁ କାହିଁକି ଉସୁଲ ନ କରିବି ? ମୋର କିଛି ପଢ଼ିବାକୁ ଇଚ୍ଛାହେଲା । ଖବର କାଗଜ ହେଲେ ବି ଚଳିବ ; କିନ୍ତୁ ଟେଲିଫୋନ କରି ଖବରକାଗଜ ମଗାଇବାକୁ ମୋର ସାହସ କୁଲାଇଲା ନାହିଁ । ତେଣୁ ଚୌକି ଟାଣିନେଇ ପ୍ରକୋଷ୍ଠର ମଝିରେ ବସିଲି । ପ୍ରକୋଷ୍ଠରେ ଥିବା ପ୍ରତ୍ୟେକ ଜିନିଷ ଦେଖିବାକୁ ଲାଗିଲି । ଏହି ସମୟରେ ହଠାତ୍ ହୋଟେଲର 'ବୟ' ସେ ପ୍ରକୋଷ୍ଠରେ ପ୍ରବେଶ କଲା ଓ ବରଫ, ପାଣି, ମାଖନ, ରୁଟି ପ୍ରଭୃତି ଥୋଇ ଦେଇ ଚାଲିଗଲା । ମୁଁ ସେ ଲୋକର ସଦ୍ବ୍ୟବହାର ଦେଖି । ମୁଁ 'ବୟ'କୁ ଏକ ଡଲାର ବକ୍ସିସ୍ ଦେଲି । ସେ ବିଶେଷ ସନ୍ତୁଷ୍ଟ ହେଲା ପରି ମୋତେ ଜଣାଗଲା । ତା'ପରେ ମୁଁ ହୋଟେଲରୁ ଚାଲି ଆସିଲି । ରାତିରେ ମୁଁ ଗୋଟିଏ ଜର୍ମାନ୍ ଅପେରା ଦେଖିବାକୁ ଗଲି । ଅଭିନୟ ବେଳେ ମୁଁ ଗୋଟିଏ ଶବ୍ଦ ବି ବୁଝିପାରିଲି ନାହିଁ କି ବିଷୟବସ୍ତୁ ଧରି ପାରିଲି ନାହିଁ । କିନ୍ତୁ ଯେତେବେଳେ ମୁଁ ବହୁତ କାନ୍ଦିବାକୁ ଲାଗିଲି । ଅଭିନୟର ଦୃଶ୍ୟ ଦେଖି ମୋର ମନେହେଲା ଯେପରି ମୋର ଜୀବନର ସମସ୍ତ ଦୁଃଖର ସାରାଂଶ ତହିଁରେ ଅଭିବ୍ୟକ୍ତ ହୋଇଛି । ମର୍ମନ୍ତୁଦ ବେଦନା ଅନୁଭବ କରି ମୁଁ ସେଠାରୁ ଫେରିଲି ।

ଚ୍ୟାପଲିନ୍ଙ୍କୁ ସର୍ବପ୍ରଥମେ 'କିଷ୍ଟୋନ କମେଡ଼ିଜ୍' କମ୍ପାନୀରେ କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା । ପ୍ରତି ସପ୍ତାହରେ ସେ ୧୫୦ ଡଲାର୍ ବେତନ ପାଉଥିଲେ । ଚୁକ୍ତିପତ୍ର ଅନୁସାରେ ତାଙ୍କୁ ପ୍ରତି ସପ୍ତାହରେ ତିନୋଟି ଫିଲ୍ମରେ (୨ବା ୪ରିଲ ଫିଲ୍ମ) ଅଭିନୟ କରିବାକୁ ପଡ଼ୁଥିଲା । ଫିଲ୍ମ କପରି ବିଭିନ୍ନ ଅଂଶରେ ବିଭକ୍ତ ହୋଇ ତିଆରି କରାଯାଏ ସେ ପର୍ଯ୍ୟନ୍ତ ସେ ତାହା ଜାଣି ନଥିଲେ । ମୂଳରୁ କେତେକ ଫିଲ୍ମରେ ତାଙ୍କର ଅଭିନୟ ଦେଖି ତାଙ୍କର ସହକର୍ମୀ ତାଙ୍କ ପ୍ରତି ଈର୍ଷାନ୍ୱିତ ହୋଇ ପଡ଼ିଥିଲେ । ଗୋଟିଏ ଫିଲ୍ମରେ ତାଙ୍କର ଅଭିନୀତ ସମସ୍ତ ଦୃଶ୍ୟ କଟାହୋଇଥିବା ଦେଖି ସେ କ୍ଷୁବ୍ଧ ହୋଇ ପଡ଼ିଲେ । କାରଣ ସେ କର୍ତ୍ତବ୍ୟନିଷ୍ଠ ବୋଲି ତାଙ୍କର ଧାରଣା ଥିଲା । ପ୍ରଥମେ ଚ୍ୟାପଲିନ ନିର୍ଦ୍ଦେଶକ ମେକ ସେନେଟ୍ଙ୍କ ଫିଲ୍ମରେ ଅଭିନୟ କରିଥିଲେ । ଅଳ୍ପଦିନ ମଧ୍ୟରେ ସେ ଅନୁଭବ କଲେ ଯେ ସେ ନିର୍ଦ୍ଦେଶକଙ୍କ ବିଷୟରେ ବହୁତ କଥା ଧାରଣା କରି ପାରିଛନ୍ତି । ନିର୍ଦ୍ଦେଶନାର ସୁଯୋଗ ଆସିବା ମାତ୍ରେ ନିର୍ଦ୍ଦେଶକ ଚ୍ୟାପଲିନଙ୍କୁ ପଚାରିଲେ, "ଆପଣଙ୍କ ପାଖରେ କୌଣସି ବିଷୟବସ୍ତୁ ଅଛି କି ? ନିଜର ସୃଜନୀ ପ୍ରତିଭା ଉପରେ ପୂର୍ଣ୍ଣ ବିଶ୍ୱାସ ରଖି ଚ୍ୟାପଲିନ୍ ଉତ୍ତର ଦେଲେ, "ଯେତେ ଇଚ୍ଛା ସେତେ କାହାଣୀ ବା ବିଷୟବସ୍ତୁ ମୋ ପାଖରେ ଅଛି । ମୋତେ କେବଳ ସୁବିଧା ମିଳିଲେ ହେଲା । ଗୋଟିଏ ହାସ୍ୟରସାତ୍ମକ ନାଟକ ରଚନା କରିବାପାଇଁ ମୋର ଦରକାର ଗୋଟିଏ ପାର୍କ (ଉଦ୍ୟାନ), ଜଣେ ପୁଲିସବାଲା ଏବଂ ଜଣେ ସୁନ୍ଦରୀ ନାରୀ । ଅଳ୍ପଦିନ ମଧ୍ୟରେ ଚ୍ୟାପଲିନଙ୍କ ନିର୍ଦ୍ଦେଶିତ ଫିଲ୍ମଗୁଡ଼ିକର ଲୋକପ୍ରିୟତା ଏପରି ବଢ଼ିଗଲା ଯେ କମ୍ପାନୀ ତାଙ୍କର ପ୍ରତ୍ୟେକ ଫିଲ୍ମ ପାଇଁ ୫୦ ହଜାର ଡଲାର ଅଗ୍ରିମ ଆଦାୟ କରୁଥିଲେ ।

୨୫ ବର୍ଷ ବୟସ୍କ ଚ୍ୟାପଲିନ୍ ଅନୁଭବ କରି ପାରିଲେ ଯେ ସେ ଗୌରବର ଶିଖର ପ୍ରଦେଶରେ ପହଞ୍ଚିବାକୁ ଦୌଡ଼ୁଛନ୍ତି ।

ଗୌରବର ସମ୍ଭାବନା ତାଙ୍କୁ ସ୍ୱାଗତ ଜଣାଉଛି । ବୈଭବ ଓ ଶାନ୍ତିରେ ସେ ମଣ୍ଡିତ ହୋଇଛନ୍ତି । ପିଲାଦିନ ବେଳରୁ ଆମେରିକା ଆସି ଅଭିନୟ କରୁଥିଲେ । ଚାପଲିନଙ୍କର ସଫଳତା ଦେଖି ସେ ସ୍ଥିର କଲେ ଯେ ସେ ମାଆଙ୍କର ଭଲମନ୍ଦ ବୁଝିବା ଦରକାର । ଚାପଲିନଙ୍କ ମା ଯେତେବେଳେ ଆମେରିକା ଯାଇଥିଲେ ସେତେବେଳେ ତାଙ୍କ ପୂର୍ବ ବନ୍ଧୁ ଶଯ୍ୟାଗତ ହୋଇଥିଲେ । ଅସମର୍ଥ ଅବସ୍ଥାରେ ମଧ୍ୟ ସେ ନିଜ ପୁଅର ଧନ ସମ୍ପତ୍ତି ଦେଖିଥିଲେ । ସେ ପୂର୍ବପରି ସ୍ୱାସ୍ଥ୍ୟଲାଭ କରିପାରି ନ ଥିଲେ । ଖ୍ୟାତ ଓ ବୈଭବମଣ୍ଡିତ ଚାପଲିନ ନିଜେ କେତେ ଥର ମନେ ମନେ ଭାବନ୍ତି ଯେ ସେ ଆଜି କେଉଁଠି ପହଞ୍ଚିଲେଣି ? ତାଙ୍କର ଏହି ଅବସ୍ଥାରେ ପ୍ରସିଦ୍ଧ ଅଭିନେତା ନେଟ୍ ଗୁଡ଼ ଉଇନ୍ ତାଙ୍କୁ ମନ୍ତ୍ରଣା ଦେଇଥିଲେ ଯେ, "ତୁମକୁ ତ ଧନଆଡୁ ଉଜାଗ ଆସିବ । କିନ୍ତୁ ତୁମେ ନିମନ୍ତ୍ରଣ ଗ୍ରହଣ କରିବ ନାହିଁ । ଜୀବନରେ କେବେ ବା ଦୁଇଜଣଙ୍କ ସହିତ ବନ୍ଧୁତା ସ୍ଥାପନ କରି କର୍ତ୍ତବ୍ୟ ପଥରେ ଅଗ୍ରସର ହୁଅ । ତୁମେ ସାରା ବିଶ୍ୱକୁ ମୁଗ୍ଧ କରି ପାରିଛ । ନିଜର ଗୌରବରେ ଅନ୍ଧ ହୋଇ ଉଚ୍ଛୃଙ୍ଖଳ ନ ହେବା ହିଁ ଭଲ ।"

ଚାପଲିନଙ୍କର ଆଉ ଜଣେ ବନ୍ଧୁ ତାଙ୍କୁ ଉପଦେଶ ଛଳରେ ଥରେ କହିଥିଲେ ଯେ ଅର୍ଥ ଏପରି ଏକ ଜିନିଷ ଯେ ତାକୁ ଭୁଲିଗଲେ ଶାନ୍ତି ମିଳେ । କିନ୍ତୁ ଚାପଲିନ ତାଙ୍କୁ ଉତ୍ତରରେ କହିଥିଲେ [ଯେ ଟଙ୍କା ପଇସା ଏପରି ଗୋଟିଏ ଜିନିଷ ଯେ ତାକୁ ସବୁବେଳେ ମନେରଖିବା ଉଚିତ ।

ଚାପଲିନ ଆମେରିକାରେ ଥାଇ ଦୁଇ ବିଶ୍ୱଯୁଦ୍ଧର ଭୀଷଣ ପରିଣାମ ଦେଖିଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ପରେ ସେ ଜର୍ମାନୀ ଯାତ୍ରା କରିଥିଲେ । ସେଠାରେ ସେ ଦୁଇଜଣ ସୈନିକଙ୍କୁ ବର୍ଲିନ ରାସ୍ତାରେ ଭିକ ମାଗୁଥିବା ଦେଖିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେ ଲଣ୍ଡନରୁ ଗୋଟିଏ ହାସପାତାଲରେ ଜଣେ ଆହତ ଅସାଧ୍ୟରୋଗଗ୍ରସ୍ତ ସୈନିକକୁ ଦେଖିଥିଲେ । ଏହି ସୈନ୍ୟଟି କେବଳ ମୃତ୍ୟୁ ଅପେକ୍ଷାରେ ରହିଥିବାର ସେ ଦେଖିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଆମେରିକା ସରକାରଙ୍କ ଏଜେଣ୍ଟ ତାଙ୍କୁ ଅନୁରୋଧ କଲେ ଯେ ସେ ମିତ୍ର ପକ୍ଷଙ୍କୁ ସାହାଯ୍ୟ କରିବା ଲାଗି ଆମେରିକାବାସୀମାନଙ୍କୁ ଅନୁପ୍ରେରିତ କରନ୍ତୁ । ଚାପଲିନ ତାଙ୍କ କଥାରେ ରାଜି ହେଲେ । ସେ ବିଭିନ୍ନ ସ୍ଥାନରେ ବକ୍ତୃତା ଦେଇ ଆମେରିକାବାସୀମାନଙ୍କୁ ନିବେଦନ କଲେ ଯେ ସେମାନେ ରୁଷିଆ ଉପରେ ହିଟଲରଙ୍କ ଆକ୍ରମଣର ଚାପ ହ୍ରାସ କରିବା ଉଦ୍ଦେଶ୍ୟରେ 'ଦ୍ୱିତୀୟ ଫ୍ରଣ୍ଟ' ଖୋଲିବାରେ ସାହାଯ୍ୟ କରନ୍ତୁ । ଆମେରିକା 'ମିତ୍ରପକ୍ଷଙ୍କ ସହିତ ଯୋଗ ଦେଲା ଓ ହିଟଲରଙ୍କ ପତନରେ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କଲା । କିନ୍ତୁ କିଛିକାଳ ନାନା ଷଡ଼ଯନ୍ତ୍ର, ଉପେକ୍ଷା ଓ ଅପମାନ ସହ୍ୟ କରି ସାରିବା ପରେ ଚାପଲିନ ଜାଣି ପାରିଲେ ଯେ ସ୍ୱୟଂ ଆମେରିକାରେ ବି ଫାସିଷ୍ଟ ସମର୍ଥକମାନଙ୍କର ଆସ୍ଥାନ ଖୁବ ଦୃଢ଼ । ସେମାନେ ଚାପଲିନଙ୍କ ବିରୋଧୀ ଗୋଷ୍ଠୀରେ ପ୍ରଚାରରେ ଜର୍ଜରିତ ହେଉଥିଲେ । ଆମେରିକାରେ ଚାପଲିନଙ୍କ ବିରୁଦ୍ଧରେ ଘୃଣାର ବହ୍ନି ଜଳି ଉଠିଲା । ସେ ଅନୁଭବ କଲେ ଯେ ଆମେରିକାରେ ରହିବା ତାଙ୍କ ପକ୍ଷରେ ଅସମ୍ଭବ । ତେଣୁ ସେ ୧୯୫୨ରେ ଆମେରିକା ଛାଡ଼ି ସ୍ୱିଜରଲାଣ୍ଡ ପ୍ରସ୍ଥାନ କଲେ ।

ଚାପଲିନ କମ୍ୟୁନିଷ୍ଟ ବୋଲି ତାଙ୍କ ବିରୁଦ୍ଧରେ ଅଭିଯୋଗ କରାଯାଇଥିଲା । ଆହୁରି ଅଭିଯୋଗ କରାଗଲା ଯେ ସେ କମ୍ୟୁନିଷ୍ଟଙ୍କ ସହଯୋଗୀ ଓ ସମର୍ଥକ । ଅବଶ୍ୟ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ କମ୍ୟୁନିଷ୍ଟଙ୍କ ସପକ୍ଷରେ ତଥା ହିଟଲର ବିରୁଦ୍ଧରେ ପ୍ରଚାର କରିଥିଲେ । କିନ୍ତୁ ସେ କଦାପି କମ୍ୟୁନିଷ୍ଟ ନ ଥିଲେ ବା କମ୍ୟୁନିଷ୍ଟ ବିରୋଧୀ ବି ନ ଥିଲେ । ପରମ୍ପରାଗତ ଧର୍ମ ପ୍ରତି ମଧ୍ୟ ତାଙ୍କର ଆସ୍ଥା ନ ଥିଲା । ସେ ଥିଲେ ଅତ୍ୟନ୍ତ ସମଦର୍ଶୀ । ତାଙ୍କର କଥା ଓ କାର୍ଯ୍ୟ ମଧ୍ୟରେ ପାର୍ଥକ୍ୟ ନ ଥିଲା ।

'ଡାଷ୍ଟ୍ ଇନ୍ ଦ ରେନ୍' ତାଙ୍କର ନିର୍ଦ୍ଦେଶିତ ପ୍ରଥମ ଫିଲ୍ମ ଥିଲା । ତାହାପରେ ସେ ସବୁ ଫିଲ୍ମର ବିଷୟବସ୍ତୁ ନିଜେ ଲେଖିଥିଲେ ଓ ନିର୍ଦ୍ଦେଶନା ମଧ୍ୟ ଦେଇଥିଲେ । ସେ ନିଜର ସହକର୍ମୀ ନିର୍ଦ୍ଦେଶକଙ୍କଠାରୁ ଚଳଚ୍ଚିତ୍ର ଶିଳ୍ପ, ଚରିତ୍ରଗୁଡ଼ିକର ଗତିଶୀଳତା ସଂପର୍କିତ ପଦ୍ଧତି ଓ ମୂଳ ଅଭିନୟ ଆଦି ଶିଖି ନେଇଥିଲେ । ତାହାପରେ ସେ ଶେଷକାଳ ପର୍ଯ୍ୟନ୍ତ ରଙ୍ଗମଞ୍ଚ ସହିତ ସଂପୃକ୍ତ ରହି ଚଳଚ୍ଚିତ୍ରର ସମସ୍ତ ବିଭାଗ ସଂପର୍କରେ ଅଭିଜ୍ଞତା ହାସଲ କରିଥିଲେ । ହାସ୍ୟ ରସାତ୍ମକ ନାଟକ ସଂପର୍କରେ ତାଙ୍କର ସହକର୍ମୀମାନଙ୍କର ଗୋଟିଏ ଦୃଢ଼ ଧାରଣା ଥିଲା ଯେ ତହିଁରେ ସମସ୍ତ ଅଭିନୟ ଖୁବ୍ ତେଜଆନ୍ ଭାବରେ ପ୍ରଦର୍ଶନ କରାଯିବା ଉଚିତ । ଉଦାହରଣ ସ୍ୱରୂପ, ଅଭିନେତାମାନେ ଦୌଡ଼ିବା ସମୟରେ ଜଣେ ଅନ୍ୟ ଜଣକ ପଛରେ ଗୋଡ଼ାଇବାବେଳେ ହଠାତ୍ ଗ୍ରୀଭ ଉପରକୁ ଚଢ଼ିଯାଇ ସଡ଼କକୁ ଡେଇଁପଡ଼ି ମଟରଗାଡ଼ି ଭିତରକୁ ପଶିଯିବା, ପାହାଡ଼ ଉପରୁ ନଦୀ ବା ପୋଖରୀ ଭିତରକୁ ଲମ୍ଫଦେଇ ଡେଇଁପଡ଼ିବା ଆଦି ଦୃଶ୍ୟ ଦର୍ଶକମାନଙ୍କ ମନରେ କୌତୂହଳ ଓ ଉଲ୍ଲାସ ସୃଷ୍ଟି କରିଥାଏ । ଦୁଇ ତିନିଗୋଟି ରିଲ୍‌ରେ ଏ ସବୁ ଦୃଶ୍ୟ ଦେଖାଇବା ଲାଗି କୌଣସି କାହାଣୀର ଆବଶ୍ୟକତା ନାହିଁ । କୌଣସି ଗୋଟିଏ ବିଷୟବସ୍ତୁ ଠିକ୍ ହୋଇ ସାରିବା ପରେ ନିର୍ଦ୍ଦେଶକ ତାହାକୁ ଅଭିବ୍ୟକ୍ତ କରିବା ନିମନ୍ତେ ବିଭିନ୍ନ ଘଟଣା ସୃଷ୍ଟି କରିବା ଆବଶ୍ୟକ । ଚାପଲିନଙ୍କ ହାସ୍ୟରସାତ୍ମକ ନାଟକରେ ପ୍ରଚଳିତ

ଅଳଡ଼ ଯଥେଷ୍ଟ ହୋଇ ନ ଥିଲା । ତାଙ୍କ ମତରେ ଫିଲ୍ମ୍ ତିଆରି କରିବା ପାଇଁ କୌଣସି ନିର୍ଦ୍ଦିଷ୍ଟ କାହାଣୀ ବା ଲେଖକଙ୍କର ସହଯୋଗ ଅନାବଶ୍ୟକ । ତାଙ୍କ ସମୟରେ ଦୁଇ ରିଲ୍ ବା ତିନି ରିଲ୍ର ଗୋଟିଏ ଫିଲ୍ମ୍ ଏକ ସପ୍ତାହ ମଧ୍ୟରେ ପ୍ରସ୍ତୁତ ହୋଇ ପାରୁଥିଲା । ଗୋଟିଏ ଫିଲ୍ମ୍ ପ୍ରସ୍ତୁତ କରିବାରେ ଏକ ହଜାର ଡଲାର ର ଖର୍ଚ୍ଚ ଫିଲ୍ମ୍ ପ୍ରସ୍ତୁତରେ ଅଥଚ ଏହି ଡଲାରରୁ ଅଧିକ ଖର୍ଚ୍ଚ ହେଉ ନ ଥିଲା । ଚାପ୍ଲିନ୍ ଏହି ପରମାଣର ଅର୍ଥ ଏହାର "ଟ୍ୱେଣ୍ଟି ମିନିଟ୍ସ ଅଫ୍ ଲଭ୍", "ଲୁଟେଡ୍ ଆଣ୍ଡ ଉଇଣ୍ଡେଡ୍", "ଲଫିଙ୍ଗ୍ ଗ୍ୟାସ୍", "ଦି ଫେଲ୍ ହେଡ୍", "ସ୍ଲି ଦୁଷ୍ଟୋଗର ପାର୍କ", ଆଦି କେତେକ ଫିଲ୍ମ୍ ପ୍ରସ୍ତୁତ କରିଥିଲେ । ତାଙ୍କ ଶ୍ରେଷ୍ଠତ୍ୱର ଅନ୍ୟ ଗୋଟିଏ ପ୍ରମାଣ ଏହି ଯେ "ଦି ଏସାନେ କମ୍ପାନୀ"ର ପ୍ରତ୍ୟେକ ଫିଲ୍ମ୍ ପାଇଁ ଶତକଡ଼ା ୫୦ ଭାଗ ଅଗ୍ରିମ ମିଳୁଥିଲା ଏବଂ ଫିଲ୍ମ୍ ପ୍ରସ୍ତୁତ ହେବା ପରେ ପ୍ରତ୍ୟେକଟି ଶତକଡ଼ା ୧୩୦ ହାରରେ ବିକ୍ରୀ ହେଉଥିଲା । ସେ ସମୟରେ ଅନ୍ୟ କୌଣସି ଫିଲ୍ମ୍ର ଚାହିଦା ଏତେ ବେଶି ନ ଥିଲା ।

"ଏସାନେ କମ୍ପାନୀ" ନାମକ ସଂସ୍ଥା ସହିତ ସଂଯୁକ୍ତ ରହି ଶ୍ରୀ ଚାପ୍ଲିନ୍ "ଦି ଟ୍ରାମ୍ପ ଓ୍ୱାକର", "ଦି ଫାୟାର ମ୍ୟାନ୍", "ଦି ଭାଗାବଣ୍ଡ", "ଓ୍ୱାନ ଏ. ଏମ୍" "ଦି କାଉଣ୍ଟ", "ଦି ପାଉନ୍ ଶପ୍", "ଦି କ୍ୟୁର୍", "ଦି ଇମିଗ୍ରାଣ୍ଟ" ଓ "ଦି ଆଡଭେଞ୍ଚରର" ଆଦି ଫିଲ୍ମ ପ୍ରସ୍ତୁତ କରିଥିଲେ । ପ୍ରତ୍ୟେକ ଦୁଇ ରିଲ୍ ବିଶିଷ୍ଟ ଏହି ବାର ଗୋଟି ଫିଲ୍ମ୍ ସେ କେବଳ ୧୬ ମାସ ମଧ୍ୟରେ ସମାପ୍ତ କରିଥିଲେ । ହାସ୍ୟରସ ଫୁଟାଇବା ପାଇଁ ଡାଆଁ କୁଦା କରିବା ଓ ଜଣେ ଅନ୍ୟ ଜଣକ ପଛରେ ଗୋଡ଼ାଇ ମାଡ଼ଗୋଳ କରିବାର ଯେଉଁ ପଦ୍ଧତି ପୂର୍ବରୁ ପ୍ରଚଳିତ ଥିଲା ଚାପ୍ଲିନ୍ ସେହି ପଦ୍ଧତି ପରିତ୍ୟାଗ କରି ହାସ୍ୟରସର ଅବତାରଣା ଓ ନୂତନ ରୂପ ଦେଇଥିଲେ । ସେ କହୁଥିଲେ ଯେ ସାଧାରଣ ବ୍ୟବହାରରେ ସୂକ୍ଷ୍ମ ପରିବର୍ତ୍ତନ କରି ହାସ୍ୟ ସୃଷ୍ଟି କରାଯାଇ ପାରେ । ହାସ୍ୟରସାତ୍ମକ ନାଟକରେ ମୂକାଭିନୟର ବ୍ୟବହାରକୁ ସାମାନ୍ୟ ଅଦଳ ବଦଳ କରି ହାସ୍ୟ ସୃଷ୍ଟି କରାଯାଇପାରେ । ଗୁରୁତ୍ୱପୂର୍ଣ୍ଣ ଘଟଣାକୁ କାଳିକ ଗୁରୁତ୍ୱହୀନ କରାଇ ଦେଖାଯାଇପାରେ । ମୂଲ୍ୟହୀନ ବସ୍ତୁକୁ ମୂଲ୍ୟବାନତାର ସ୍ପର୍ଶ ଦିଆଯାଇପାରେ । ପୁଣି ହାସ୍ୟ ମଧ୍ୟ "ଅସ୍ତିତ୍ୱବୋଧ" ଓ ସଂଗ୍ରାମର ଚେତନାକୁ ପ୍ରତିଫଳିତ କରିପାରେ । ମନକୁ ସ୍ଥିର ରଖେ । ହାସ୍ୟରସ ଜୀବନର ଜଟିଳ ପରିସ୍ଥିତିରେ ମନୁଷ୍ୟକୁ ଅଧିକ ବିଚଳିତ ହେବାକୁ ଦିଏ ନାହିଁ । ଫିଲ୍ମ୍ ପ୍ରସ୍ତୁତ ସଂପର୍କରେ ନିଜର ମତାମତ ଦେବାକୁ ଯାଇ ସେ କହିଛନ୍ତି ଯେ କର୍ମୀତା କେବଳ କ୍ୟାମେରା ରଖିବାର ଉପଯୁକ୍ତ ସ୍ଥାନ ବାଛିନେଇ ଉଚ୍ଚିତ

ଦୃଶ୍ୟ ସଂଯୋଜକ ବ୍ୟକ୍ତିଭ ମନସ୍ତାତ୍ତ୍ୱିକ ପ୍ରଭାବ ମଧ୍ୟ ସୃଷ୍ଟି କରି ପାରନ୍ତି । ଏହାହିଁ ହେଉଛି ଚଳଚ୍ଚିତ୍ର ନିର୍ମାଣ ପଦ୍ଧତିର ମୂଳ ସୂତ୍ର । କ୍ୟାମେରାକୁ ଆବଶ୍ୟକତା ଅନୁସାରେ ଦୂର ବା ନିକଟରେ ରଖି ଦୃଶ୍ୟ ଓ ଅଭିନୟର ପ୍ରଭାବୋତ୍ପାଦକତା ବୃଦ୍ଧି କରାଯାଇପାରେ । "କ୍ଲୋଜ ଅପ୍" ଦ୍ୱାରା ଯେ କୌଣସି ଦୃଶ୍ୟ ବା ଚରିତ୍ରର ହାବଭାବକୁ ସେ ଗୁରୁତ୍ୱପୂର୍ଣ୍ଣ କରାଯାଇପାରେ—ଏପରି କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ । କେଉଁଠାରେ ଓ କିପରି ଭାବରେ କ୍ଲୋଜ ଅପ୍ର ପ୍ରୟୋଗ କରିବାକୁ ହେବ ଫିଲ୍ମ ନିର୍ମାତାଙ୍କ ମନୋଭାବ ଦ୍ୱାରା ତାହା ସ୍ଥିର ହୋଇ ପାରିବ । ଫିଲ୍ମ୍ ନିର୍ମାତାଙ୍କୁ ଯଥା ସମ୍ଭବ ଚେଷ୍ଟା କରିବାକୁ ହେବ ଯେପରିକି ସେ ପ୍ରେକ୍ଷକମାନଙ୍କ ହୃଦୟ, ମସ୍ତିଷ୍କ ଉଭୟକୁ ପ୍ରଭାବିତ କରିପାରିବେ । କଳା ଯଦି କେବଳ ମସ୍ତିଷ୍କକୁ ପ୍ରଭାବିତ କରେ ତାହାହେଲେ ତାହାର ଲକ୍ଷ୍ୟ ପୂରଣ ହେଲା ବୋଲି କୁହାଯାଇ ନ ପାରେ । ମୁଁ ମୋର କ୍ୟାମେରାକୁ ସେହି ସ୍ଥାନରେ ରଖିବି ଯେଉଁଠାରେ ଅଭିନେତାମାନେ ନିଜର କୌଶଳ ପ୍ରଦର୍ଶନ କରିବାରେ ତାହା କୌଣସି ଅସୁବିଧା ସୃଷ୍ଟି କରିବ ନାହିଁ । ଯଦି କ୍ୟାମେରା ଅଭିନେତାମାନଙ୍କ ଗତିବିଧି ଉପରେ ହସ୍ତକ୍ଷେପ କରେ ତାହାହେଲେ ଅଭିନେତାମାନେ ବା କ'ଣ ଦେଖାଇବେ, କେବଳ କ୍ୟାମେରା ହିଁ ନିଜର କରାମତି ଦେଖାଇବ । ସମସ୍ତ କଳାର ଏହା ଅନ୍ୟ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ନିୟମ । ଆଇଜେନ୍ଷ୍ଟାଇନ୍ ଓ ଗ୍ରିଫିଥ୍ ଉଭୟେ ଏହା ଜାଣିଥିଲେ । ଫିଲ୍ମ୍ ଟେକ୍ନିକ୍ର ପରିବ୍ୟାପ୍ତିକତାକୁ ନିପୁଣ ଭାବେ ସଂପାଦନ କରିବା ଓ ଗୋଟିଏ ଦୃଶ୍ୟକୁ ଆଉ ଗୋଟିଏ ଦୃଶ୍ୟରେ ନିମଜ୍ଜିତ କରିଦେବା ଏକ କଳା । ମୋର ଟେକ୍ନିକ୍, ମୋର ଅଭ୍ୟାସ ଓ ଚିନ୍ତା ଉପରେ ପର୍ଯ୍ୟବସିତ । ଅନ୍ୟର ଅନୁକରଣ ଉପରେ ଏହାର ବିକାଶ ଘଟେ ନାହିଁ । 'କଳା'ରେ ସମସ୍ତ ସହିତ ପାଦ ମିଳାଇ ଚାଲିବାକୁ ହେବ ବୋଲି ଯେଉଁ ଯୁକ୍ତି କରାଯାଏ ମୁଁ ତାହା ସହିତ ଏକମତ ନୁହେଁ ।

ଚାପ୍ଲିନ କହନ୍ତି—ଯଦି ମସ୍ତିଷ୍କ ସକ୍ରିୟ ନ ଥାଏ ତାହାହେଲେ ଅଭିନୟ କରିବା ଅସମ୍ଭବ । ଯଦି ଜଣେ ଅଳ୍ପ ଶିକ୍ଷିତ ଅଭିନେତାଙ୍କଠାରେ ସର୍ଜନାତ୍ମକ ପ୍ରତିଭା ଥାଏ ତାହାହେଲେ କେବଳ ଟେକ୍ନିକର ସହଯୋଗ ତାଙ୍କ ପକ୍ଷରେ ଯଥେଷ୍ଟ । ଅଭିନେତାଙ୍କୁ ଗତାନୁଗତିକତା ପରିହାର କରିବା ପାଇଁ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବା ଆବଶ୍ୟକ । ବିଧାନ ଓ ବ୍ୟବଧାନକୁ ବୈଦିକ ସ୍ପର୍ଶ ଦେବା, ରଚନା ଓ ପରିବେଷଣରେ ପରିପାଟୀ ରକ୍ଷା କରିବା ଦରକାର । କିନ୍ତୁ ଅଭିନୟରେ ଏସବୁର ଅଧିକ ଆବଶ୍ୟକତା ନାହିଁ । ଯଦିଓ ଅଭିନୟର ଅଭାବରେ ଏସବୁ ବ୍ୟର୍ଥ ହୋଇଯିବା ସମ୍ଭବ । 'ଚରିତ୍ର'ର ଜୀବନବୃତ୍ତାନ୍ତ ସଂପର୍କରେ ଅବହିତ ଅଭିନେତା

ପକ୍ଷରେ ଅନାବଶ୍ୟକ । ଯେଉଁ ନାଟ୍ୟ ସଂସ୍ଥାମାନେ ଉପସ୍ଥିତ ଭାବ ସୃଷ୍ଟି କରିବାପାଇଁ କିମ୍ବା ପ୍ରଦର୍ଶିତ ଓ ଅନ୍ତର୍ଦର୍ଶନର ଯୋଗ ସମ୍ପର୍କରେ ଶିକ୍ଷା ଦିଅନ୍ତି—ମୁଁ ସେମାନଙ୍କୁ ଘୃଣା କରେ । ଛୁଟିର ମାନସିକ ଅବସ୍ଥା ଆଶାନୁରୂପ ନୋହି ଥିବା ନଥାଉଲେ ତାହାର ଉଦ୍ଦେଶ୍ୟ ହେଲା ସେ ଅଭିନୟକୁ ଜଳାଞ୍ଜଳି ଦେଇଦେବା ଦରକାର । ଜଣେ ନୂତନ ଅଭିନେତା ଯେତେ ପ୍ରତିଭାବାନ ହୋଇଥାନ୍ତୁ ପଛକେ ତାଙ୍କୁ 'ଟେକ୍‌ନିକ୍' ସମ୍ବନ୍ଧରେ ତାଲିମ କରାଯିବା ଆବଶ୍ୟକ । ଅଭିନୟର ଭିତ୍ତିଭୂମି ଠିକ୍ ରଖିବା ଓ ତାହାକୁ ପ୍ରଭାବଶାଳୀ କରିବା ସକାଶେ ସ୍ଥିତି ନିର୍ଦ୍ଧାରଣ ସମ୍ପର୍କରେ ଜ୍ଞାନ ଥିବା ଦରକାର । ଅର୍ଥାତ୍ ଜଣେ ଅଭିନେତା ପକ୍ଷରେ ଜାଣିବା ଉଚିତ ଯେ ମଞ୍ଚ ଉପରେ ବା କ୍ୟାମେରା ସାମନାରେ କେଉଁଠି ଠିଆ ହେବାକୁ ପଡ଼ିବ, କ'ଣ କରିବାକୁ ହେବ । ରଙ୍ଗମଞ୍ଚରେ ପ୍ରବେଶ କରିବା ସମୟରେ ଅଭିନେତାଙ୍କୁ କେଉଁଠାରେ ଅଟକି ଯିବାକୁ ପଡ଼ିବ, କେଉଁ ଆଡ଼କୁ ବୁଲି ପଡ଼ିବାକୁ ହେବ, କେଉଁଠି ଠିଆ ହେବାକୁ ପଡ଼ିବ ଓ କେତେବେଳେ ଏବଂ କେଉଁଠାରେ ବସିବାକୁ ହେବ— ଏସବୁ ଭଲରୂପେ ବୁଝିନେବାକୁ ହେବ । ଅଭିନେତାଙ୍କ ସହିତ ସିଧା କଥାବାର୍ତ୍ତା କଲାବେଳେ ଅଥବା ପରୋକ୍ଷ ଭାବରେ ନିର୍ଦ୍ଦେଶ ଦେଲାବେଳେ ମୁଁ ସର୍ବଦା ସ୍ଥିତି ନିର୍ଦ୍ଧାରଣ ଜ୍ଞାନ ଉପରେ ଜୋର୍ ଦେଇଥାଏ । ସରଳତା, ସୂକ୍ଷ୍ମତା ଓ ସଂଯମ ଏହି ତିନୋଟି ଅଭିନୟର ସର୍ବଶ୍ରେଷ୍ଠ ଗୁଣ ।

ଚାପଲିନ୍ କୃତ୍ରିମ ନିଶ ଲଗାଇ ବାଦୃଷକର ବେଶ ପିନ୍ଧି ଯେତେବେଳେ ରଙ୍ଗମଞ୍ଚରେ ଉପସ୍ଥିତ ହୁଅନ୍ତି ସେତେବେଳେ ସେ ଦର୍ଶକମାନଙ୍କୁ ହସାଇ ହସାଇ ବେଦମ୍ କରି ଦିଅନ୍ତି । ସେ ତାଙ୍କର ସମସ୍ତ ନିର୍ବାକ୍ ଚଳଚ୍ଚିତ୍ରର ନାୟକ ରୂପେ ଏବେ ମଧ୍ୟ ଲକ୍ଷ ଲକ୍ଷ ଲୋକଙ୍କ ମୁହଁରେ ହସ ଫୁଟାଇ ପାରୁଛନ୍ତି । ସେ ନର୍ତ୍ତକର ଭୂମିକାରେ ଅବତୀର୍ଣ୍ଣ ହେବା ପୂର୍ବରୁ କେବଳ ଅଭିନୟ କରୁଥିଲେ । ଥରେ ମେକ୍‌ସେନେଟ୍ ଚାପଲିନଙ୍କୁ କହିଲେ "ମୋତେ ଆଜି ଗୋଟିଏ ଦୃଶ୍ୟ ପରିବେଷଣ କରିବାକୁ ହେବ । ଉହିଁରେ ଗୋଟିଏ ପ୍ରହସନ ଦେଖାଇବା ଦରକାରପଡ଼ୁଛି । ତେଣୁ ତୁମେ ଯାଅ ଓ ନିଜର ଇଚ୍ଛାନୁଯାୟୀ ବାଦୃଷକର ବେଶ ହୋଇ ରଙ୍ଗଭୂମିକୁ ଆସ" ମେକ୍‌ଅପ୍ ରୁମ ଆଡ଼କୁ ଗଲାବେଳେ ଚାପଲିନ୍ ଭାବିଲେ ଯେ ସେ ହାତରେ ଗୋଟିଏ ବାଡ଼ି ଧରିବା ଦରକାର ଓ ଗୋଟିଏ ବଡ଼ ପେଣ୍ଟ ଜଣ ବଡ଼ ଯୋତା ଓ ଡର୍ବିହ୍ୟାଟ୍ ପିନ୍ଧି ମଞ୍ଚ ଉପରକୁ ଯିବେ । ସେ ଭାବିଲେ ଯେ ସବୁ ଜିନିଷ ବେଢ଼ଙ୍ଗ ହେବା ଦରକାର । ପେଣ୍ଟ ବଡ଼ ହେବା ଦରକାର । କୋଟ୍ ଲମ୍ବା ହେବା ଦରକାର, ହ୍ୟାଟ୍ ଛୋଟ ଓ ଜୋତା ଲମ୍ବା ହେବା ଦରକାର । ସେନେଟ୍ ତାଙ୍କୁ ପୂର୍ବରୁ କହିଥିଲେ ଦର୍ଶକମାନେ ବ୍ୟସ୍ତ ଲୋକ । ତେଣୁ ସେ ଛୋଟ କୃତ୍ରିମ ନିଶ ଲଗାଇଲେ । ବେଶ ବଦଳାଇବାପରେ ଚାପଲିନ୍ ଅନୁଭବ କଲେ ଯେ ସେ ଏକ ନୂଆ ଚରିତ୍ର ସୃଷ୍ଟି କରିଛନ୍ତି । ଏହି ବେଶ ଦେଖିଲାପରେ ଦର୍ଶକମାନଙ୍କର ପ୍ରତିକ୍ରିୟା କ'ଣ ହେବ ସେ ତାହା ବେଶ ଅନୁମାନ କରିପାରୁଥିଲେ । ବାଡ଼ି ବୁଲାଇ ବୁଲାଇ ସେ ସାମନାକୁ ଗଲାବେଳେ ତାଙ୍କୁ ଦେଖି ସେନେଟ୍ ହସି ହସି ଗଡ଼ିଗଲେ । ଚାପଲିନ୍ ତାଙ୍କୁ କହିଲେ ଏହି ମହାଶୟଙ୍କ ପ୍ରତିଭା ବହୁମୁଖୀ । ସେ ଅତ୍ୟନ୍ତ ଭବଘୁରିଆ, ଭଦ୍ରଲୋକ, କବି ଓ ସ୍ୱପ୍ନଦର୍ଶୀ । ଏ ଏମିତି ଗୋଟିଏ ଜଣ ଯେ ପ୍ରେମ ଲାଭ କରିବା ଓ ଦୁଃସାହସିକ କାର୍ଯ୍ୟ ଦେଖାଇବା ପ୍ରତି ସର୍ବଦା ଆଶାବାଦୀ । ତୁମକୁ ମୁଁ ବିଶ୍ୱସ୍ତ ରୂପେ କହିପାରେ ଏ ଚରିତ୍ର ଜଣେ ବୈଜ୍ଞାନିକ, ସଂଗୀତଜ୍ଞ, ଡ୍ୟୁକ୍ ଓ ପୋଲୋ । ଖେଳରେ ଧୁରନ୍ଧର । ଏହା ସମ୍ଭବ, ସେ ଶୁଣ୍ଢିଆ ସିଗାରେଟ୍ ଗୋଟାଇବାକୁ ମଧ୍ୟ କୁଣ୍ଠାବୋଧ କରନ୍ତିନାହିଁ ।

୧୯୧୯ରେ ଚାପଲିନ୍ ମେରିପିକ୍‌ଫୋର୍ଡ, ଡଗଲାସ ଫେୟାରବ୍ୟାଙ୍କ ଓ ଡି. ଡବ୍ଲ୍ୟୁ ଗ୍ରିଫିଥଙ୍କୁ ନିଜର ସହଯୋଗୀ ରୂପେନେଇ "ୟୁନାଇଟେଡ୍ ଆର୍ଟିଷ୍ଟ" ନାମକ ଫିଲ୍ମ କମ୍ପାନୀ ସ୍ଥାପନ କରିଥିଲେ । ଏହି କମ୍ପାନୀ ଆନୁକୂଲ୍ୟରେ ୧୯୨୫ ରେ ଦ ଗୋଲ୍ଡରସ୍, ୧୯୩୧ ରେ ସିଟିଲାଇଟ୍ ଓ ୧୯୩୬ ରେ ମଡର୍ଣ୍ଣ ଟାଇମସ୍, ୧୯୪୦ରେ ଦ ଗ୍ରେଟ ଡିକ୍‌ଟେଟର, ୧୯୪୭ରେ ମଁସିୟର ଭେର୍ଦୁ ଓ ୧୯୫୨ରେ ଲାଇମ୍‌ଲାଇଟ୍ ନାମକ ଫିଲ୍ମ ନିର୍ମାଣ କରିଥିଲେ । "ଦଗ୍ରେଟ୍ ଡିକ୍‌ଟେଟର" ତାଙ୍କର ପ୍ରଥମ ସବାକ ଚଳଚ୍ଚିତ୍ର ଥିଲା । ଏହି ଚଳଚ୍ଚିତ୍ରର ଶେଷରେ ସେ ଯେଉଁ ଭାଷଣ ଦେଇଥିଲେ ତା'ର ଗୋଟିଏ ଅଂଶ ଏଠାରେ ଉଦ୍ଧାର କରାଯାଉଛି । ମୁଁ କାହାକୁ ଶାସନ କରିବାକୁ ଚାହେଁ ନାହିଁ କି ମୁଁ କାହା ଉପରେ ବିଜୟ ହାସଲ କରିବାକୁ ଚାହେଁ ନାହିଁ । ସମ୍ଭବ ହେଲେ ମୁଁ ପ୍ରତ୍ୟେକଙ୍କୁ ଚାହେଁ । ସେ ଇହୁଦୀ ହୋଇଥାନ୍ତୁ ବା ଅଣ ଇହୁଦୀ ହୋଇଥାନ୍ତୁ, କଳା ଲୋକ ହୋଇଥାନ୍ତୁ ବା ଗୋରା ଲୋକ ହୋଇଥାନ୍ତୁ——————

ଏହି ପୃଥିବୀ ଅତ୍ୟନ୍ତ ସମୃଦ୍ଧିଶାଳୀ ଓ ଏହା ପ୍ରତ୍ୟେକ ବ୍ୟକ୍ତିର ଆବଶ୍ୟକତା ପୂରଣ କରିପାରିବ .......... .............. ଯେଉଁ ନୌକରଶାହୀ ଶାସନର ସୈତାନୀ ଫଳରେ ତୁମ୍ଭେମାନେ ପରାସ୍ତ ହୋଇଛ, ହେ ସୈନିକ ଗଣ ! ସେହି ଦୈତାନଙ୍କୁ ବର୍ଜନ କର ! ସେମାନେ ତୁମ୍ଭମାନଙ୍କୁ ଗୋଲାମରେ ପରିଣତ କରୁଛନ୍ତି— ସେମାନଙ୍କ ହୁକୁମ ଅନୁଯାୟୀ ତୁମ୍ଭମାନଙ୍କୁ ଚିନ୍ତା କରିବାକୁହେବ—ଓ ଅନୁଭବ କରିବାକୁହେବ । ତୁମର ସଚେତନ ମନକୁ ଅନୁଭବ ବା ଚିନ୍ତାନାହିଁ । ସେମାନେ

ତୁମକୁ ନେଇ ପରେଡ କରୁଥିଲେ, ତୁମର ପୋଷାକ୍ ପୋଷାକ ଠିକ କରୁଥିଲେ, ତୁମ୍ଭମାନଙ୍କ ସମ୍ବନ୍ଧୀୟ ଜ୍ଞାନ କରୁଥିଲେ । ଏହି ଅସ୍ୱାଭାବିକ ମନୁଷ୍ୟମାନଙ୍କର ଶୈତାନ ବଳକର—ସେମାନେ ମନୁଷ୍ୟ ନୁହଁନ୍ତି ମେସିନ୍........ ତୁମ୍ଭେମାନେ ମେସିନ୍ ନୁହଁ । ଅସ ଆମେ ସମସ୍ତେ ମିଶି ଗୋଟିଏ ନୂତନ ବିଶ୍ୱପାଇଁ ସଂଘର୍ଷ କରିବା—ଏପରି ଗୋଟିଏ ଜଗତର ବିଶ୍ୱପାଇଁ ଆମେ ଲଢ଼ିବା, ଯାହାକି ପ୍ରତ୍ୟେକ ବ୍ୟକ୍ତିକୁ କାର୍ଯ୍ୟ କରିବାର ସୁଯୋଗ ଦେଇ ପାରିବ, ଯାହାକି ଯୁବକମାନଙ୍କୁ ସମ୍ଭାବନାପୂର୍ଣ୍ଣ ଭବିଷ୍ୟତପାଇଁ ଓ ବୃଦ୍ଧ ବ୍ୟକ୍ତିମାନଙ୍କୁ ବଞ୍ଚି ରହିବାପାଇଁ ନିର୍ଭରତା ବା ଗ୍ୟାରେଣ୍ଟି ଦେଇପାରିବ । ସେମାନେ ଦାଇଦାଦେଇ ଏହି ଶୈତାନର ଦଳ ହ୍ରାସ କରୁଛନ୍ତି । କିନ୍ତୁ ସେମାନେ ମିଥ୍ୟା କହୁଛନ୍ତି, ସେମାନେ କେବେହେଲେ ନିଜର ପ୍ରତିଶ୍ରୁତି ପୂରଣ କରନ୍ତିନାହିଁ........ ......

ଅଜି ଏହି ବିଶ୍ୱକୁ ମୁକ୍ତ କରିବାପାଇଁ ତୁମ୍ଭମାନଙ୍କୁ ସଂଘର୍ଷ କରିବାକୁ ହେବ—ପୁଞ୍ଜିପତିଙ୍କର ବନ୍ଧନ ଭାଙ୍ଗିବାକୁ ପଡ଼ିବ – ଏଥିପାଇଁ ଆମ୍ଭମାନଙ୍କୁ ସ୍ୱାର୍ଥ, ଘୃଣା ଓ ଅସହିଷ୍ଣୁତାକୁ ମଳପୋଛ କରିବାକୁ ପଡ଼ିବ । ଆମ୍ଭମାନଙ୍କୁ ଏପରି ଏକ ବିଶ୍ୱପାଇଁ ସଂଘର୍ଷ କରିବାକୁ ହେବ........ ଯେଉଁଠାରେ ପ୍ରଗତିଶୀଳ ବିଜ୍ଞାନ ଓ କଳା ଆମ ସମସ୍ତଙ୍କୁ ସୁଖୀ ଓ ସମୃଦ୍ଧିଶାଳୀ କରିପାରିବ ।








"ସ୍ୱର୍ଗତ ଜବାହରଲାଲ୍ ନେହରୁ ନାରୀ ସମାଜ ସଂପର୍କରେ ଦେଇଥିବା ବକ୍ତୃତାର କିୟଦଂଶ ସଂଗୃହିତ ହୋଇ ଚଳିତ ଅନ୍ତର୍ଜାତିକ ମହିଳା ସମ୍ବତ୍ସର ଉପଲକ୍ଷେ ନିମ୍ନରେ ପ୍ରଦାନ କରାଗଲା ।"

## ସ୍ୱାଧୀନତା ସଂଗ୍ରାମ:—

"ଆମ ଦେଶ—ଜନ ସଂଖ୍ୟାର ଅଧାଅଧି କେବଳ ମହିଳା । ଯଦି ଏହି ନାରୀ ଜାତି ଅଶିକ୍ଷା ଓ ଅଜ୍ଞତା ତଥା ଅନଗ୍ରସରତା ମଧ୍ୟରେ ପଡ଼ି ରହନ୍ତି, ତା'ହେଲେ ଆମ ଦେଶର ପ୍ରଗତି ସମ୍ଭବପର ହେବ କି ? ଯଦି ଦେଶରେ ମାତୃଜାତି ଆତ୍ମ-ବିଶ୍ୱାସୀ ଓ ସୁଦକ୍ଷା ନହୁଅନ୍ତି, ତାହେଲେ ତାଙ୍କର ସନ୍ତାନ ସନ୍ତତିମାନେ ଭବିଷ୍ୟତରେ ଆତ୍ମବିଶ୍ୱାସୀ, ଦକ୍ଷ ଓ ସୁନାଗରିକ ହେବେ ବୋଲି ଆମ୍ଭେମାନେ କିପରି ଆଶାକରିବା ? ଆମେ ଆମଦେଶର ବହୁ ମନସ୍ୱିନୀ ଓ ବୀରରମଣୀଙ୍କର ସାହସିକ କାର୍ଯ୍ୟାବଳୀ ସଂପର୍କରେ ଇତିହାସ ପୃଷ୍ଠାରୁ ଦେଖିବାକୁ ପାଉଥାଉଁ । ଏପରିକି ସେମାନେ ମୃତ୍ୟୁ ପର୍ଯ୍ୟନ୍ତ ସେମାନଙ୍କର ବୀରତ୍ୱ ପ୍ରଦର୍ଶନ କରିଥିଲେ ମଧ୍ୟ ଭାରତ ଏବଂ ଭାରତ ବାହାରେ ନାରୀ ସମାଜର ବିକାଶ ଆଦୌ ସନ୍ତୋଷଜନକ ନୁହେଁ । ଆମର ସଭ୍ୟତା, ସଂସ୍କୃତି, ଚାଲି ଚଳନ, ଆଇନ୍ କାନୁନ ଇତ୍ୟାଦି ପୁରୁଷମାନଙ୍କ ଦ୍ୱାରା ପ୍ରଣୀତ ଓ ନିୟନ୍ତ୍ରିତ ହେଉଅଛି । କେବଳ ସେମାନେ ନିଜର ସୁଖ ସୁବିଧା ସକାଶେ ସମାଜରେ ଶ୍ରେଷ୍ଠସ୍ଥାନ ଅଧିକାର କରିବା ସଙ୍ଗେ ସଙ୍ଗେ ନାରୀକୁ ଏକ ଅସ୍ଥାବର ସଂପତ୍ତି, ଖେଳନା ତଥା ଉପଭୋଗର ବିଳାସ ସାମଗ୍ରୀ ରୂପେ ବିଚାର କରି ଆସିଛନ୍ତି ଓ ସେମାନଙ୍କୁ ଶୋଷଣ କରିବା ନିମନ୍ତେହିଁ ସହନଶୀଳ ହୋଇଛନ୍ତି । ଏହାପରେ କ୍ରମାଗତ ଶୋଷଣ ଫଳରେ ନାରୀଜାତି ତା'ର ଅନ୍ତର୍ନିହିତ ଶକ୍ତିର ବିକାଶ କରିବାରେ ଅସମର୍ଥ ହେବା ସଙ୍ଗେ ସଙ୍ଗେ ତା'ର ଦକ୍ଷତାର ପୂର୍ଣ୍ଣାଙ୍ଗ ବିକାଶ ମଧ୍ୟ କରିପାରିନାହିଁ । କ୍ରମଶଃ ପାଶ୍ଚାତ୍ୟ ଦେଶରେ ନାରୀମାନେ ବିଭିନ୍ନ କ୍ଷେତ୍ରରେ ବିଶେଷ ସ୍ୱାଧୀନତା ହାସଲ କରିଥିଲେ ମଧ୍ୟ ଭାରତୀୟ ନାରୀ ଜାତି ଏ କ୍ଷେତ୍ରରେ ପଛେଇ ଯାଇଛନ୍ତି । ତଥାପି ସେମାନେ ଆଜିର ଏହି ପ୍ରଗତିବାଦର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଉଠିଲେଣି । ବର୍ତ୍ତମାନ ଆମ୍ଭମାନଙ୍କୁ ପ୍ରଚଳିତ ସାମାଜିକ କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ କରିବାକୁ ପଡ଼ିବ । ଯେଉଁ ଶତଶତ ପ୍ରଥାମାନ ପ୍ରଚଳିତ ରହି ଆମ୍ଭମାନଙ୍କ ପ୍ରଗତି ପଥରେ ଅନ୍ତରାୟ ସୃଷ୍ଟି କରୁଛି, ତାହାର ମୂଳୋତ୍ପାଟନ କରିବାକୁ ହେବ । ପୁରୁଷ ଓ ନାରୀ, ବୃଦ୍ଧ ଓ ତାଙ୍କ ସୁଦ୍ଧା ଏହି ସ୍ୱାଧୀନତାର ସୂର୍ଯ୍ୟାଲୋକ ଓ ମୁକ୍ତ ବାୟୁରେ କେବଳ ବଢ଼ି ପାରିବେ । ସେମାନେ ପରାଧୀନତାର ରୁଦ୍ଧ ବାତାବରଣ ତଥା ଅତ୍ୟାଚାରରେ ଖାଉଁଳି ପଡ଼ିବେ ଓ ସେମାନଙ୍କର ଅଗ୍ରଗତି ହୋଇ ପାରିବ ନାହିଁ । ଦେଶର ଭାରତସ୍ଥ ଜନସାଧାରଣଙ୍କର ଦାରିଦ୍ର୍ୟ, ଦୁଃଖ ଦୁର୍ଦ୍ଦଶା ତଥା ଅନ୍ୟାନ୍ୟ ସମସ୍ୟାବଳୀର ଆଶୁ ସମାଧାନ କରିବା ଆମ୍ଭମାନଙ୍କର ସର୍ବ ପ୍ରଥମ କର୍ତ୍ତବ୍ୟ । ଏଣୁ ଭାରତସ୍ଥ ନାରୀ ସମାଜ, ଶତାବ୍ଦୀର ପୁରୁଷଙ୍କଦ୍ୱାରା ପ୍ରଣୀତ ଆଇନକାନୁନ୍ ଓ କୁସଂସ୍କାର ଚକ୍ର

ବିଷୟରେ ଅଧିକ ଏକ ବିଶେଷ ଦାୟିତ୍ୱ ବହନ କରିବା ଉଚିତ୍ । ଯଦି ନାରୀମାନେ ସେମାନଙ୍କର ସୁଖ ସମୃଦ୍ଧି ପାଇଁ ଦୃଢ଼ସ୍ୱରରେ ଆନ୍ଦୋଳନ ନକରନ୍ତି, ତେବେ ପୁରୁଷ ଜାତି ଯେ ସେମାନଙ୍କୁ ଏ ଦିଗରେ କୌଣସି ସାହାଯ୍ୟ ବା ସମର୍ଥନ ଦେବ, ତାହା ଆଶା କରିବା ବାତୁଳତା ମାତ୍ର ।

## ଶିକ୍ଷା ସଂଯୁକ୍ତି:—

"ନାରୀ ଶିକ୍ଷାକୁ ପୁରୁଷମାନଙ୍କ ଶିକ୍ଷାଠାରୁ ପୃଥକ୍ କରିବା ସକାଶେ ବିଭିନ୍ନ ସମସ୍ୟାରେ ମୁକ୍ତ ଉପସ୍ଥାପନା କରାଯାଇଛି । ନାରୀମାନଙ୍କୁ କେବଳ ପରିଚାରଣା ଧନ୍ଦା ଓ ଗତାନୁଗତିକ ପ୍ରଥାରେ ବନ୍ଧାହୋଇ ଜୀବନରେ ଆବଦ୍ଧ ରହି ସେ ବିଷୟରେ ଭାଷଣ ଦେବାପାଇଁ କେତେକ ମତାମତ ଦେଇ ଥାଆନ୍ତି । କେତେକଙ୍କ ନାରୀ ଶିକ୍ଷା ସଂପର୍କରେ ସେମାନଙ୍କର ସୀମିତ ଓ ଏକତରଫା ଦୃଷ୍ଟି ଏବଂ ମନୋଭାବକୁ ସମର୍ଥନ କରିବାକୁ ମୁଁ ସଂପୂର୍ଣ୍ଣ ରୂପେ ଅସମର୍ଥ । ମୋ ମତରେ ନାରୀମାନଙ୍କୁ ସମାଜର ପ୍ରତ୍ୟେକ ବୟସରେ ଉଚ୍ଚ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ସେମାନେ ଯେପରି ବିଭିନ୍ନ କ୍ଷେତ୍ରରେ ତଥା ବୃତ୍ତିଗତ ଧନ୍ଦାରେ ପାରଦର୍ଶିତା ଲାଭ କରିବେ ସେଥି ସକାଶେ ସେମାନଙ୍କୁ ସବୁ ପ୍ରକାର ସୁବିଧା ଦିଆଯିବା ଉଚିତ୍ । ବିଶେଷକରି, ମହିଳାମାନେ ନିଜ ନିଜକୁ ଯଦି ଏକ— ମୌଳିକ ବୃତ୍ତିଗତ ପ୍ରଥା ଓ ଅର୍ଥନୈତିକ ଆତ୍ମନିର୍ଭରଶୀଳୀ ରୂପେ ଗଢ଼ି ନ ପାରନ୍ତି ତାହେଲେ ସେମାନେ ଯଥାର୍ଥ ସ୍ୱାଧୀନତା ଉପଭୋଗ କରିପାରିବେ ନାହିଁ । ବ୍ୟକ୍ତି ସ୍ୱାଧୀନତା, ଅର୍ଥନୈତିକ ସ୍ଥିରତା ଅପେକ୍ଷା ଅଧିକ ସ୍ଥିରତା ଉପରେ ନିର୍ଭର କରେ ଏବଂ ନାରୀମାନେ ଯଦି ଅର୍ଥନୈତିକ ଦୃଷ୍ଟିରୁ ସ୍ୱାଧୀନ ଓ ଉପାର୍ଜନକ୍ଷମ ହୋଇ ନପାରନ୍ତି ତାହାହେଲେ ସେମାନଙ୍କୁ ସେମାନଙ୍କର ସ୍ୱାମୀ କିମ୍ବା ଅନ୍ୟ କୌଣସି ବ୍ୟକ୍ତିଙ୍କ ଉପରେ ନିର୍ଭର କରିବାକୁ ପଡ଼ିବ । ଯେ ବ୍ୟକ୍ତିକୁ ଅନ୍ୟ ଉପରେ ନିର୍ଭର କରୁଥିବା ନାରୀମାନେ କପରି ବା ସ୍ୱାଧୀନତା ଉପଭୋଗ କରିପାରିବେ ? ପୁରୁଷ ଓ ନାରୀ ପରସ୍ପର ଉପରେ ଏକାନ୍ତ ନିର୍ଭରଶୀଳ ନହୋଇ ସ୍ୱାଧୀନ ଓ ବନ୍ଧୁତ୍ୱପୂର୍ଣ୍ଣ ପରିବେଶ ମଧ୍ୟରେ ସହଯୋଗ ତଥା ମିଳାମିଶା କରିବା ଉଚିତ୍ ।

## ପୁରୁଣା କାଳିଆ ପ୍ରଥାର ଉଚ୍ଛେଦ:—

"ଆମ ସମାଜରେ ପ୍ରଚଳିତ ପୁରୁଣା କାଳିଆ ବିବାହ ଆଇନ କାନୁନ୍ ଓ ଗତାନୁଗତିକ ଚଳଣି ଆମମାନଙ୍କୁ, ବିଶେଷକରି ନାରୀ ସମାଜର ପ୍ରତ୍ୟେକ କ୍ଷେତ୍ରରେ ଯେଉଁ ଘୋର ଦୁର୍ଗତିର ସୃଷ୍ଟି କରୁଛି ତାର ଉଚ୍ଛେଦ କରିବା ସଙ୍ଗେ ସଙ୍ଗେ ନୂତନ ଆଦର୍ଶରେ ଅନୁପ୍ରାଣିତ ହେବା କ'ଣ ଅସମ୍ଭବ ? ବିଶେଷତଃ ନାରୀ ଜାତିର ଶାରୀରିକ ତଥା କ୍ରୀଡ଼ା କସରତର ଉନ୍ନତିବିଧାନ ସକାଶେ ଶାରୀରିକ ତଥା ବୁଦ୍ଧିବୃତ୍ତିର ସହ ଆପଣ କ'ଣ ସଂଗ୍ରାମ ଚଳାଇ ପାରିବେ ନାହିଁ ? ଯାହା ଫଳରେ କି ଭାରତର ନାରୀମାନେ ସ୍ୱାସ୍ଥ୍ୟବତୀ ଓ ସୁନ୍ଦରୀ ହେବା ସଙ୍ଗେ ସଙ୍ଗେ ସୁସ୍ଥ ସବଳ ସନ୍ତାନ ସନ୍ତତିର ଜନନୀ ହୋଇ ପାରିବେ ଏବଂ ସର୍ବୋପରି, ଆଜି ଦେଶର ଏହି ଦୋଳାୟମାନ ପରିସ୍ଥିତି ଜାତୀୟ ତଥା ସାମାଜିକ ସ୍ୱାଧୀନତା ହାସଲ କରିବା ସକାଶେ ଯେଉଁ ସଂଗ୍ରାମ ଚାଲିଛି, ସେଥିରେ କ'ଣ ଆପଣ ସାହସିକତାର ସହିତ ଅବତୀର୍ଣ୍ଣ ହୋଇ ପାରିବେ ନାହିଁ ।"

## ବାଳିକାମାନଙ୍କ ଶିକ୍ଷା ସହିତ ଦେଶର ଅଗ୍ରଗତି ସଂଶ୍ଳିଷ୍ଟ

"ବାଳିକାମାନଙ୍କ ଶିକ୍ଷାର ବ୍ୟାପକ ପ୍ରସାର ନିମନ୍ତେ ଯଥେଷ୍ଟ ଆବଶ୍ୟକତା ଥିବା ମୁଁ ମନେକରେ । ଆପଣମାନେ ଦେଖିବାକୁ ପାଇବେ ଅତୀତରେ ଭାରତର ଯେଉଁ ଯେଉଁ ସ୍ଥାନମାନଙ୍କରେ ବାଳିକାମାନଙ୍କ ଶିକ୍ଷାକୁ ଉତ୍ସାହିତ କରାଯାଇଛି, ସେହି ସବୁ ସ୍ଥାନଗୁଡ଼ିକରେ ଅଗ୍ରଗତି ସାଧିତ ହୋଇଛି । ସୁତରାଂ ଆପଣମାନେ ଯେ କୌଣସି କ୍ଷେତ୍ରରେ କିଛି ନା କିଛି କରନ୍ତୁ ନା କାହିଁକି, ବାଳିକାମାନଙ୍କ ଶିକ୍ଷାର ପ୍ରସାର ଓ ଅଭିବୃଦ୍ଧି ନିମନ୍ତେ ଆମ ସମସ୍ତଙ୍କୁ ଅଧିକ ଅଗ୍ରସର ହେବାକୁ ପଡ଼ିବ । ଏଥିସକାଶେ କେତେକ ଗ୍ରାମାଞ୍ଚଳରେ ବାଧାବିଘ୍ନ ଉପୁଜିବ ବୋଲି ମୁଁ ମନେକରେ । (ଅବଶ୍ୟ ବର୍ତ୍ତମାନ ଆଉ ସେପରି ବାଧା-ବିଘ୍ନର ଆଶଙ୍କା ନାହିଁ) କିନ୍ତୁ ସହରାଞ୍ଚଳମାନଙ୍କରେ ଏଥିପାଇଁ କୌଣସି ପ୍ରକାର ପ୍ରତିବନ୍ଧକ ନାହିଁ । ବରଂ ସହରବାସୀ ନାରୀ ଶିକ୍ଷାର ଆବଶ୍ୟକତା ସମ୍ପର୍କରେ ବେଶ୍ ସଚେତନ ।

ଲକ୍ଷ୍ୟ କଲେ ଜଣାଯାଏ ଯେ ନାରୀ ଜାତି ବିଭିନ୍ନ କର୍ମକ୍ଷେତ୍ରରେ ନିଯୁକ୍ତି ପାଇଛନ୍ତି । ସେମାନେ କୃଷିକ୍ଷେତ୍ରଠାରୁ ଆରମ୍ଭକରି ଶିଳ୍ପ କାରଖାନାମାନଙ୍କରେ ମଧ୍ୟ କାମ କରୁଛନ୍ତି । ମଧ୍ୟବିତ୍ତ ଶ୍ରେଣୀର ମହିଳାମାନେ ବିଭିନ୍ନ ପ୍ରକାର ସମସ୍ୟାର ସମ୍ମୁଖୀନ ହୋଇଥାନ୍ତି । କେତେଗୁଡ଼ିଏ କାରଣ ବଶତଃ ଅନ୍ୟମାନେ ମଧ୍ୟ ବିଭିନ୍ନ ପ୍ରକାର ସମସ୍ୟାର ସମ୍ମୁଖୀନ ହେଉଛନ୍ତି । କିନ୍ତୁ କୌଣସି ବ୍ୟକ୍ତି ବାଳିକାମାନଙ୍କ ଶିକ୍ଷାକୁ ବିରୋଧ କରନ୍ତି ନାହିଁ । ଏଥି ନିମନ୍ତେ କେତେକ ଆନୁଷଙ୍ଗିକ ସୁବିଧା ସୁଯୋଗର ଅଭାବ ରହିଛି । ବିଭିନ୍ନ ପ୍ରକାର ସୁବିଧା ସୁଯୋଗର ଅଭାବ ନ ରହିଲେ ସ୍କୁଲ ଓ କଲେଜ ଗୁଡ଼ିକରେ କ୍ରମଶଃ ବହୁସଂଖ୍ୟକ ବାଳିକା ଅଧ୍ୟୟନ ପାଇଁ ଆଗ୍ରହ ପ୍ରକାଶ କରିବେ ।"

## ବୃତ୍ତି —

"ଯେ କୌଣସି ନାରୀର ସାମାଜିକ ସ୍ଥିତିରୁହିଁ ସେ ଦେଶର ଜାତୀୟ ଚରିତ୍ର ସମ୍ପର୍କରେ ବିଶେଷ କିଛି ସୂଚନା ମିଳିଥାଏ । ଯେହେତୁ ସେ ଦେଶର ଶିକ୍ଷା, ସାମାଜିକ, ଅର୍ଥନୈତିକ ତଥା ଅନ୍ୟାନ୍ୟ କ୍ଷେତ୍ରରେ ପ୍ରଗତିହିଁ ତହିଁର ମାପକାଠି ।

"ପୂର୍ବରୁ ମହିଳାମାନଙ୍କୁ ବିଭିନ୍ନ କର୍ମକ୍ଷେତ୍ରରେ ସୁଯୋଗ ନ ଦେଇ ନିରୁତ୍ସାହିତ କରିବା ମନୋଭାବ ଆଜି ଆଉ ଦେଖିବାକୁ ମିଳୁନାହିଁ । ଏହା ହୋଇପାରେ ଯେ କେତେକ ବୃତ୍ତିଗତ ଧନ୍ଦା ମହିଳାମାନଙ୍କ ନିମନ୍ତେ ଉପଯୁକ୍ତ ନହୋଇ ପାରେ । କିନ୍ତୁ ଏହା ଏକ ଭିନ୍ନ ପ୍ରଶ୍ନ । ମହିଳାମାନଙ୍କର ନିମନ୍ତେ ଏକାଧିକ ବିଭିନ୍ନ ପ୍ରକାର ବୃତ୍ତିଗତ ଧନ୍ଦା ପୂର୍ବରୁ ରହିଥିଲା ଏବଂ ଏବେ ବି ମଧ୍ୟ ଅଛି । ଆମ୍ଭେମାନେ ସହଜ ସହଜରେ ଅନୁଧ୍ୟାନ କଲେ ଜାଣିବାକୁ ପାଇବା ଯେ ଭାରତର ଅଧିକାଂଶ ମହିଳା କୃଷି କ୍ଷେତ୍ରରେ କାର୍ଯ୍ୟ କରିଥାନ୍ତି । ଯେତେବେଳେ କେହି ଜଣେ ମଧ୍ୟବିତ୍ତ ଶ୍ରେଣୀକୁ ଉଠିଯାଏ, ସେତେବେଳେ ତା' ମନରେ ପାତର ଅନ୍ତର ବା ଭେଦଭାବ ମନୋଭାବ ଉଦ୍ରେକ ହୁଏ । ପରିସ୍ଥିତିର ଚାପ ଓ ତାଡ଼ନାରେ ଆମ ଦେଶର ଅଧିକାଂଶ ମହିଳା କୃଷି କ୍ଷେତ୍ରରେ କାର୍ଯ୍ୟ କରିଥାନ୍ତି । ଦୁର୍ଭାଗ୍ୟ ବଶତଃ, ଯେଉଁ ବ୍ୟକ୍ତି ଯେତେ ଅଳ୍ପ କାମକରେ ତା'ର ସାମାଜିକ ସ୍ଥିତି ଓ ସମ୍ମାନ ସେତିକି ବେଶି ବୋଲି ଆମ ଦେଶର ଲୋକମାନଙ୍କ ମନରେ ଏକ ଧାରଣା ସୃଷ୍ଟି ହୋଇ ଆସିଛି । ଯେହେତୁ ଯେଉଁ ଲୋକ ଆଦୌ କିଛି କାମ କରନ୍ତି ନାହିଁ, ତାଙ୍କର ସାମାଜିକ ସ୍ଥିତି ଓ ମାନ ସମ୍ମାନ ଖୁବ୍ ଉଚ୍ଚରେ । କିନ୍ତୁ ଆମ ଦେଶର ଲୋକମାନଙ୍କ ମନରୁ ଏପରି ଭ୍ରାନ୍ତ ଧାରଣା ଦ୍ରୁତ ବେଗରେ ହ୍ରାସ ପାଉଥିବାରୁ ମୁଁ ବିଶେଷତଃ ଆନନ୍ଦିତ ।"

## ନାରୀମାନଙ୍କ ଉପରେ ବିଶ୍ୱାସ—

"ନାରୀ ଜାତି ପ୍ରତି ମୋର ଯଥେଷ୍ଟ ସମ୍ମାନ ରହିଛି । ମୁଁ ଅତୀତ ଭାରତର ମହିଳାମାନଙ୍କ ଆଦର୍ଶ ସମ୍ପର୍କରେ କିଛି କହିବାକୁ ଯାଉନାହିଁ । ଏପରିକି ଆଜିର ଭାରତୀୟ ନାରୀମାନଙ୍କୁ ମଧ୍ୟ ମୁଁ ପ୍ରଶଂସା କରିଥାଏ । ସେମାନଙ୍କ ଉପରେ ମୋର ଅତଳ ବିଶ୍ୱାସ ଅଛି । ସେମାନଙ୍କର ମୁକ୍ତ ଓ ସ୍ୱାଧୀନ ଜୀବନ ଯାପନ ପାଇଁ ମୁଁ ଚିନ୍ତିତ ନୁହେଁ । କାରଣ ମୋର ଦୃଢ଼ ଆଶା ଓ ବିଶ୍ୱାସ, କୌଣସି ପ୍ରକାର ନିୟମ କାନୁନ ସମାଜର ନିର୍ଦ୍ଦିଷ୍ଟ ଗତିପଥକୁ ବଦଳାଇ ଦେବା ନିମନ୍ତେ ପ୍ରତିବନ୍ଧକ ସୃଷ୍ଟି କରିନ ପାରେ । ଯଦି ଏହି କ୍ଷେତ୍ରରେ ଅତ୍ୟଧିକ ଆଇନ କାନୁନ ପ୍ରୟୋଗ କରାଯାଏ, ତା'ହେଲେ ବର୍ତ୍ତମାନର ସାମାଜିକ ସ୍ଥିତି ବିପନ୍ନ ହୋଇ ପଡ଼ିବ ।"

## ଅତୀତ ଏବଂ ବର୍ତ୍ତମାନର ନାରୀ—

"ଆମ ଦେଶର ସ୍ୱାଧୀନତା ସଂଗ୍ରାମରେ ନାରୀମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ନାରୀମାନଙ୍କର ଭୂମିକା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି ନିଃସନ୍ଦେହରେ କୁହାଯାଇ ପାରେ ଏବଂ ଏହା ପୃଥିବୀର ଅନ୍ୟାନ୍ୟ ଦେଶଠାରୁ ସଂପୂର୍ଣ୍ଣ ପୃଥକ୍, ମୋର ଦୃଢ଼ବୋଧ ହେଉଛି ଯେ ଭାରତୀୟ ମହିଳାମାନଙ୍କର ଯୋଗଦାନ ଦ୍ୱାରାହିଁ ଆମ ଦେଶର ପ୍ରଗତି ସାଧିତ ହୋଇ ପାରିବ । କେତେକ ୟୁରୋପ ଦେଶର ମହିଳାମାନଙ୍କ ଅପେକ୍ଷା ଆମ ଦେଶର ମହିଳାମାନେ ରାଜନୈତିକ ତଥା ଅନ୍ୟାନ୍ୟ କ୍ଷେତ୍ରରେ ଖୁବ୍ କମ୍ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ । ଆମ ଦେଶର ତତ୍କାଳୀନ ରାଜନୈତିକ ସଂଗ୍ରାମ ସମସ୍ତ ସାମାଜିକ ପ୍ରତିବନ୍ଧକକୁ ପ୍ରତିହତ କରିବା ସଙ୍ଗେ ସଙ୍ଗେ ନାରୀ ଜାତିକୁ ଜାତୀୟ ମୁକ୍ତି ସଂଗ୍ରାମରେ ସାମିଲ କରାଇବା ନିମନ୍ତେ ଅପୂର୍ବ ସୁଯୋଗ ଦେଇଥିଲା ।

ଏହି ଅପୂର୍ବ ଜାତୀୟ ମୁକ୍ତି ସଂଗ୍ରାମ ଭାରତର ପ୍ରତ୍ୟେକ ଶ୍ରେଣୀ, ସଂପ୍ରଦାୟ, ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ଲୋକମାନଙ୍କୁ ଏକତ୍ରିତ କରିଥିଲା । ଏହାହିଁ ହେଉଛି, ପ୍ରକୃତ ଜାତୀୟ ମୁକ୍ତି ସଂଗ୍ରାମ । ଏହି ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ନାରୀମାନେ ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଆପଣମାନେ ଜାଣନ୍ତି—କେନ୍ଦ୍ରୀୟ ମନ୍ତ୍ରିମଣ୍ଡଳ ତଥା କେତେକ ରାଜ୍ୟ ମନ୍ତ୍ରୀମଣ୍ଡଳରେ ମହିଳାମାନେ ମଧ୍ୟ ମନ୍ତ୍ରୀ ଅଛନ୍ତି । ଆମ ଦେଶର ସର୍ବବୃହତ୍ ପ୍ରଦେଶରେ ଜଣେ ମହିଳା ରାଜ୍ୟପାଳ ଥିଲେ । ଆମର ରାଷ୍ଟ୍ରଦୂତମାନଙ୍କ ମଧ୍ୟରେ ଜଣେ ମହିଳା ରାଷ୍ଟ୍ରଦୂତ ଅଛନ୍ତି । ଆମ ଦେଶରେ ମହିଳାମାନେ ବିଭିନ୍ନ କ୍ଷେତ୍ରରେ ସକ୍ରିୟ ଭାବେ ଅଂଶ ଗ୍ରହଣ କରୁଛନ୍ତି ।"



ଅଧ୍ୟାପିକା ବିଦ୍ୟୁତଲତା ନନ୍ଦ

ଏବର୍ଷଠାରୁ ଶୁଭାରମ୍ଭ ପୃଥିବୀସାରା ଆନ୍ତର୍ଜାତିକ ମହିଳା ବର୍ଷ ପାଳନ କରାଯାଉଛି । ନାରୀ ପୁରୁଷ ସଙ୍ଗେ ସମାନ । ସମାଜର ପ୍ରତ୍ୟେକ କ୍ଷେତ୍ରରେ ନାରୀର ସମାନ ଅଧିକାର । ଆଜି ଆଉ କେବଳ ଘରର ଅନ୍ଧାରି କୋଣରେ ନାରୀର ସ୍ଥାନ ନୁହେଁ ।

କମଳାର ମନ ଉଚ୍ଛୁଳି ଉଠୁଥିଲା । ପୁଣି ମାନସିକ ଦ୍ୱନ୍ଦ୍ୱରେ ସେ ପ୍ରଶ୍ନ କରୁଥିଲା ନିଜକୁ—ମୁଁ ତ ଜଣେ ନାରୀ । ତେବେ ଏ ବନ୍ଦୀଶାଳାରୁ ମୁକ୍ତ ନହେବି କାହିଁକି ? ଏମିତି ପଶୁଭଳି ଜୀବନ, ନିତିଦିନ ହୁଇଟା ଗାଳି ଖାଇ ବଞ୍ଚିବା କଥା । ଆଉ କ'ଣ ତା ମୂଲ୍ୟ ଅଛି ଏ ଜୀବନରେ ?



ବେଡ଼୍‌ରୁମ୍‌କୁ ବନ୍ଦ କରି ରଖୁଥିଲା ସେ । ପାଞ୍ଚବର୍ଷ ହେଲା ଏ ଘରକୁ ବୋହୂ ହୋଇ ଆସିଲାଣି ସେ ଗାଁ ଦାଣ୍ଡରେ ଦିନବେଳେ ଯିବାକୁ ବି ବାରଣ । ଠିକ୍ ଯେମିତି ଗୋଟାଏ ପଞ୍ଜୁରୀର ପକ୍ଷୀ ମୁଁ । ଶାଶୁ ଓ ସ୍ୱାମୀଙ୍କର ବିନା ଅନୁମତିରେ କେଉଁଠିକି ଯିବା ମଧ୍ୟ ସମ୍ଭବ ନୁହେଁ । କିନ୍ତୁ, କାହିଁକି ? ଏ ପ୍ରଶ୍ନର ଉତ୍ତର ସେ ଖୋଜି ବୁଲୁଥିଲା ।

ଶାଶୁଙ୍କର ପାଟି ଶୁଭିଲା—ଅଲୋ, ହେ ବୋହୂ, ତରକାରୀ ପୋଡ଼ି ଅଙ୍ଗାର ହେଲାଣି । ବେଡ଼୍‌ରୁମ୍‌ଟା ପାଖେ କାହିଁକି ବସିଛୁ ?

କମଳା ରୋଷେଇ ଘରକୁ ଉଦ୍‌ଭ୍ରାନ୍ତା ହୋଇ ପଶି ଯାଉଥିଲା ବେଳେ ପଛରୁ ଶୁଭୁଥିଲା ଶାଶୁଙ୍କର କଥା । ଆଉ ଯେତେ ଦୋଷ ସାହେବଙ୍କ ଦେଇ ଆସନ୍ତା ସେ ବେଡ଼୍‌ରୁମ୍‌କୁ, କେତେ ଧରି ବସନ୍ତୁ । ବାପ ତ ଲୋକ ଶିକ୍ଷା ଦେଇନି ସେ ଝିଅ ଗୋଡ଼ ଲମ୍ବାଇ ବସିବ ।

ଶାଶୁଙ୍କର ଏମିତି କଟୁକଥା ତା'ର ଦେହସୁହା ହୋଇ ଯାଇଥିଲା । ତଥାପି ଆଜି ସେ କାହିଁକି ମନେ ମନେ ବିଦ୍ରୋହ କରି ଉଠୁଥିଲା । ଖାଲି ତା'ର ଶାଶୁଙ୍କ ପ୍ରତି ନୁହେଁ, ଏଇମିତି କେତେକଣ ନୀଚମନା ନାରୀଙ୍କପାଇଁ ପ୍ରକୃତରେ ନାରୀ ଜାତିର ଉନ୍ନତିରେ ବାଧା ଆସୁଛି ବୋଲି ସେ ଭାବୁଥିଲା ।

ନବ ଦାମ୍ପତ୍ୟ ଜୀବନର ଚକ ତଳେ ପେଷି ହୋଇ ଯାଉଥିଲା କମଳା । ସୁରେଶ ତାର ସ୍ୱାମୀ । ବାପାଙ୍କ ଅର୍ଜିତ ସମ୍ପତ୍ତି ଉପରେ ଆସ୍ଥା ରଖି ନିଜେ କିଛି କରିବାକୁ ମନ ବଳାଇଲା ନାହିଁ । ସୁରେଶ ଗାଁରେ ଟାଉଟରି କରେ । ମୂର୍ଖ ଲୋକ ମାନଙ୍କୁ ଭୁଲାଇ ଟଙ୍କା ରୋଜଗାର କରେ ।

କମଳ ମନେ ମନେ ଘୃଣାକରେ । ହେଲେ ହିନ୍ଦୁ ନାରୀର ସ୍ୱାମୀ ଦେବତା ଭାବି ସବୁ ସହିଯାଏ ।

ଦିନ ସରିଯାଇ ରାତି ଆସେ । ରାତି ପୁଣି ଗଭୀର ହୁଏ । ସୁରେଶ ଘରକୁ ଫେରେ, ରାତିର ଅନ୍ଧକାରରେ ଅନେକ ଡେରିରେ । ଜୁଆଡ଼ିଙ୍କ ଆଡ୍ଡା ସଙ୍ଗେ ସୁରେଶ କେବେ ଜିତେ ତ କେବେ ହାରେ । କିନ୍ତୁ ସେ ସବୁବେଳେ ହାରିଯାଏ କମଳା ପାଖରେ ।

କେମିତି ଗୋଟାଏ କଡ଼ା ଗନ୍ଧରେ ନାକରେ ଲୁଗାଦିଏ କମଳା । ଲଣ୍ଠନଟାକୁ ଆଉ ଟିକେ ତେଜି ଦେଇ କମଳା ବାହାରେ ମୁହଁମାଡ଼େ । ଏ ଭିତରେ ସେ ବଞ୍ଚିବାର ବାଟ ଖୋଜି ପାଇଛି । ସୁରେଶ ଉପରୁ ମୁହଁ ଫେରାଇ ଲୁହଭରା ଆଖିରେ ସେ ବାହାର ପଥ ଖୋଜେ ।

ଆଖି ଆଗରେ ଭାସି ଉଠେ ବାପାଙ୍କର ସରଳ ସୁନ୍ଦର ମୁହଁଟି । ସେହି ମୁହଁରେ ଥାଏ ପ୍ରେରଣାର ଭାଷା ।

ସେଦିନ ସେ ତାକୁ ବଞ୍ଚିବାର ସାହସ ଦେଉଥିଲେ । ସେ କହୁଥିଲେ—ଦେଖ୍ କମଳା, ବଞ୍ଚିବାକୁ ଶିଖ୍, ଜୀବନ ସୁଖରେ ବିତାଇଲେ ଚଳିବ ନାହିଁ । ଯେଉଁ ଜୀବନରେ ଦୁଃଖ ନ ଥାଏ, ଯେଉଁ ଦୁଃଖସ୍ଥଳେ ଭଗବାନଙ୍କ ସ୍ମୃତି ନ ହୁଏ, ସେ ଜୀବନ ମୋ ମତରେ ମଣିଷ ଜୀବନ ନୁହେଁ ।

କମଳା ନିହାତି ମୂର୍ଖ ନଥିଲା । ବିବାହ ପୂର୍ବରୁ ମାଟ୍ରିକ ପାସ୍ କରିଥିଲା । ବାପାଙ୍କର ପ୍ରଚୋଦନ ଭରା ସେମିତି ତା'ର ଶିଖିଲା ରକ୍ତରେ ଚମକ ସୃଷ୍ଟି କରୁଥିଲା । ଗୋଟାଏ ଅପଦାର୍ଥ ହାତରେ ପଡ଼ି ନିଜକୁ ସେ ଜୀବନ୍ତ ସମାଧି ଦେଇ ନପାରେ । ତାକୁ ମଣିଷ ଭଳି ବଞ୍ଚିବାକୁ ହେବ । ମନକୁ ଦୃଢ଼ କରିଥିଲା କମଳା ।

ସେଦିନର ଘଟଣା ଅଲିଭା ହୋଇ ରହିଛି କମଳାର ମନରେ ।

—ଆଜ୍ଞା, ଆପଣ ଏ କ'ଣ କରୁଛନ୍ତି ? ଉଞ୍ଚାଇ ଧରିଥିବା ଠେଙ୍ଗାଟାକୁ ଖୁବ୍ ସାହସର ସହିତ ବରୁଟକାଇ ସୁରେଶ ହାତରୁ ଛଡ଼ାଇ ନେଇଥିଲା ମିସ୍ ପ୍ରତିମା ଦାସ । ସେଇ ଗାଁରେ ନୂଆ ଗଢ଼ିଥିବା ଝିଅମାନଙ୍କର ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ସେ ।

ସ୍ୱାମୀର ପ୍ରଥମ ପ୍ରହାରରେ ଚେତା ହରାଇ ତଳେ ପଡ଼ିଯାଇଥିଲା କମଳା । କୋମଳ ଫୁଲଟି ପାଖୁଡ଼ା ଖଣ୍ଡ ଛିନ୍ନ ଭିନ୍ନ ହେଲାପରି ଅସ୍ତବ୍ୟସ୍ତ ହୋଇ ତଳେ ପଡ଼ିଥିଲା କମଳା । ମୁଣ୍ଡର ଗୋଟାଏ ପାଖ ଫାଟି ରକ୍ତ ବୋହୁଥିଲା ।

ଫାଷ୍ଟଏଡ୍ ବ୍ୟାଗରୁ କିଛି ଔଷଧ ଦେଇ କମଳାର ମୁଣ୍ଡରେ ପଟି ବାନ୍ଧି ଦେଇଥିଲା ମିସ୍ ପ୍ରତିମା ଦାସ । ସୁରେଶର ଅଶୋଭନୀୟ ଭାଷା ଓ ବ୍ୟବହାରକୁ ଡରିଯାଇ ନଥିଲା ସେ । "ଯଦି ସେ ମରିଯାଏ ମୁଁ ଆପଣଙ୍କୁ ଟାଣିଯାଇ ପୋଲିସରେ ଦେବି", କହୁଥିଲା ପ୍ରତିମା ।

"ଆପଣ ମୋ ଘରେ ମାମଲତକାରୀ ଦେଖାଇବାକୁ କିଏ ସେ ? ମୋ ସ୍ତ୍ରୀକୁ ଜୀବନରୁ ମାରିଦେବାର ଅଧିକାର ବି ମୋର ଅଛି । ମୋ ଘରେ ଆପଣ ଆସି ମଝିରେ ଠିଆ ହେବାଟା, କମ୍ ସାହସ ତ ନୁହେଁ ?" ଅଭଦ୍ର ଭଳି କହୁଥିଲା ସୁରେଶ ।

ପ୍ରତିମା ପ୍ରତିବାଦ କରି କହି ଉଠିଲା, "ମୋର ସେ ସାହସ ଅଛି ନିଶ୍ଚୟ । ମୋର ପଡ଼ୋଶୀର ଅକୁଳ କ୍ରନ୍ଦନରେ ମୁଁ ସ୍ଥିର ହୋଇ ରହି ନପାରେ । ତା'ଛଡ଼ା ଗୋଟାଏ ନୃଶଂସ ପଶୁ ହାତରେ କମଳାକୁ ମୁଁ ଛାଡ଼ିଦେଇ ପାରିବି ନାହିଁ । କାରଣ ତାକୁ ମୁଁ ନିଜର ଭଉଣୀ ଭଳି ଦେଖେ ।

"ଓ । ଏତେଦୂର ମମତା ଆପଣଙ୍କର ମୋପାଇଁ । ଏ ଗାଁରୁ ଆପଣଙ୍କୁ ବିଦାୟ କରିବା ମୋର ହେଲା ପ୍ରଧାନ କାମ । ଆଚ୍ଛା ଦେଖାଯିବ.. ଦିନେ ନା ଦିନେ ବୁଝିବେ ମୁଁ କ'ଣ କରିପାରେ ।" କହି ଚାଲିଗଲେ ସୁରେଶ

—ମୂର୍ଖ, ନନ୍‌ସେନ୍‌ସ୍ ..ପ୍ରତିମାର ଉତ୍ତର ଥିଲା ତାପାଇଁ ।

ଦେଖାପାଇ କମଳା ଦେଖିଲା ଚନ୍ଦନଙ୍କର କୋଳରେ ତା'ର ମୁଣ୍ଡ । ସେ ଆଖି ଦେଇଛନ୍ତି । ଏମିତି କୋମଳ ହାତର ସ୍ପର୍ଶ ବିବାହ ପରେ ସେ ଦିନେ ବି ପାଇ ନଥିଲା ତାର ସ୍ୱାମୀଠାରୁ ।

ଲୁହ ଦୁଇଧାର ଗଡ଼ାଇ ସେ କହୁଥିଲା, "ଆପଣ ମୋତେ ବଞ୍ଚାଇଦେଲେ ଏ ଯନ୍ତ୍ରଣା ହାତରୁ । ହେଲେ ଏ ବନ୍ଦୀଶାଳାରୁ ମୁଁ କ'ଣ ମୁକ୍ତ ହୋଇ ପାରିବି ଦିଦି ?"

—ନିଶ୍ଚୟ ପାରିବୁ । କଠିନ ଶାମୁକା ଭିତରେ ମୁକ୍ତାର ସନ୍ଧାନ ମିଳିଲା ଭଳି ଏଇ ଜନ୍ତୁର ସମାଜର କୁସଂସ୍କାର ଭିତରେ ନିର୍ମଳ ଜୀବନର ଆବିଷ୍କାର ହେବ ଆମର ଲକ୍ଷ୍ୟ । ମିସ୍ ପ୍ରତିମା ଦାସ ଭାବପ୍ରବଣ ହୋଇ କହି ଯାଉଥିଲା ।

କମଳା କ୍ଷଣକପାଇଁ ଉତ୍ସାହିତା ହୋଇ ଉଠିଥିଲା । ହିଁ, ମୁଁ ନିଶ୍ଚୟ ପାରିବି, ନିଜକୁ ମଣିଷ ଭଳି ବଞ୍ଚାଇ ପାରିବି ।

ଦୁଃଖରେ ପୁଣି ସେ କହୁଥିଲା ଦିଦିଙ୍କୁ—"ଏମିତି ବିନଗୁଡ଼ା ମୋର ଦେହ ଖୁଆ ହୋଇ ଯାଇଥିଲା ଦିଦି । ବାପା ଦେଇଥିବା ଯୋଉଁ ଗହଣା ସବୁ ବିକି ଖାଇଗଲେ, ଶେଷରେ ମୁଦିଟାପାଇଁ ଜିଦ ଧରିଥିଲେ । ହେଲେ ସେ ଥିଲା ମୋର ବିବାହ ବେଳର ଏକମାତ୍ର ସମ୍ବଳ ।"

କମଳାର ହାଲୁଆ ଗାଲରେ ଦୁଇଟୋପା ଲୁହ ମୁକ୍ତାଭଳି ଟଳ୍ ଟଳ୍ କରୁଥିଲା । ପ୍ରଥମ ଯୌବନର ରଙ୍ଗ କେତେଟୁ ଝାଉଁଳି ଯାଇଥିଲା ଜୀବନ ଝାଞ୍ଜିରେ ତା'ର ।

ପ୍ରତିମା ସବୁ ଲକ୍ଷ୍ୟକରି କଥା ବଦଳାଇ, ତା'ର ପାଠ ପଢ଼ାରେ ସାହାଯ୍ୟ କରିବାପାଇଁ ପ୍ରତିଶ୍ରୁତି ଦେଇ ଆସିଲା ।

"ବୁଝିଲୁ କଟେଇ ଦାଦା, ଏ ମାଷ୍ଟରଣୀଟାକୁ ଏଠୁ ଗାଁରୁ ବିଦାୟ ନକଲେ ଗାଁର ସବୁ ବୋହୂ ଝିଅ ନଷ୍ଟ ହୋଇଯିବେ । ପାଠପଢ଼ା ନାଁରେ ସରକାରଙ୍କୁ ଝିଅମାନଙ୍କୁ ଶିକ୍ଷା ଦେଉଛି । ତା'ଛଡ଼ା କ'ଣ ଗୋଟାଏ ମୁକ୍ତିକାମୀ ମହିଳା ସମିତି ଗଢ଼ି ମଝିରେ ମଝିରେ ସଭା ବସାଉଛି । କହୁଛି ମହିଳା ବର୍ଷ ଏଇଟା । ସେଥିରେ ଏ ଝିଅବୋହୂ ଲାଜହାଣ୍ଡି ଛାଡ଼ି ବାହାରେ ବୁଲିଲେଣି । ମଣିଷର ମାନ ମହତ ସବୁ ଗଲା, ଏ ଗାଁର ନାଁ ପଡ଼ିବ ଶେଷରେ" ସୁରେଶ କହୁଥିଲା ।

"ତୋ ଖୁଡ଼ୀର ଆସି ବସୁନୁ ଗଲଣି ଦାଣ୍ଡ ଦୁଆର ମୁହଁ ଦେଖିଲଣି ନା ? ଏ ଗୁଡ଼ା କଳିଯୁଗ କାରବାର । ଆଉ କ'ଣ ଚରିତ୍ର ରହିବ ତାଙ୍କର—ଛିଃ, କଳି ଯୁଗରେ ଯାହା ହେବାର ହେବ—" କଟେଇ ଦାଦା କଥାର ଶିଅ ଧରିଲେ ।

ସେ ଥିଲା ଜଷ୍ଟମ ବରଷା ରାତି । ଗାଁ ଦାଣ୍ଡରେ ପାଣି ସୁଅ ବୁହୁଛି । ଝିଙ୍କାରିର ଝିଁ ଝିଁ ଶବ୍ଦରେ କାନ ଅତଡ଼ା ଖାଉଛି । କାଳୀ ଦଉଡ଼ି ଯାଇଥିଲା ଗାଁ ମୁଣ୍ଡ ପୋଖରୀକୁ ଝାସ ଦେବାପାଇଁ ।

ଦେହରେ ପୂର୍ଣ୍ଣ ଯୌବନ ଲହଡ଼ି ଖେଳୁଥିଲା । ତାକୁ ଉପରେ ଚମଡ଼ାଟା ଥିଲା କୁହେଁ ବୋଲି ଯୌବନ ତା'ର ପୋଡ଼ି ଯାଉଥିଲା ଅପେ ଅପେ । କେତେ ବସନ୍ତର ସମାଧି ସ୍ତୂପ ହୋଇ ସେ ନିଜକୁ ଆହୁରି କାହିଁମିଁଟିଆ କଲା; ଭରି ଦେଇଥିଲା ।

ଭାଇ ଭାଉଜଙ୍କର ଗାଳିଦା । ଭାଉଜର କଟାକ୍ଷ । ବିନା ଯନ୍ତ୍ରଣାରେ କିଏ ଉଠାଇବ ସ୍ୱାମୀ । ସବୁବାଡ଼ି ବନ୍ଦ ନିଜକୁ ବଳି ଦେଲେ ବି ତ ଧନ ହେବନି ସନ୍ତୁଷ୍ଟ ଦେବାକୁ । ବସିଥାଉ ଯେମିତି ବୁଢ଼ୀ ହେବାଯାଏ ।

ଭାଉଜର କଡ଼ା କଥା ସେଦିନ ସହ୍ୟକରି ନପାରି କାଳୀ ଗାଁ ପୋଖରୀର ଆଶ୍ରୟ ଖୋଜୁଥିଲା ।

ରାତି ଗୋଟାଏ, ଗାଁ ଶୁନ୍‌ଶାନ୍ । ଏ ବରଷା ରାତିରେ ନବ ବିବାହିତା ବଧୂଟି କେତେ ସୁନ୍ଦର ସ୍ୱପ୍ନ ଦେଖେ । ପଲ୍ଲୀର ଅନ୍ଧାର କୋଣରେ ବି ସୃଷ୍ଟି ହୁଏ ସ୍ୱପ୍ନପୁରୀ । ପୁଣି କିଏ ଅନ୍ଧାର ରାତିରେ ଟିକିଏ ସହାନୁଭୂତିପାଇଁ ଖୋଜି ବୁଲେ । ମଦ୍ୟପ, ଲୁଣ୍ଠ, ପଶୁଭଳି ସ୍ୱାମୀର ତାଡ଼ନାରେ କିଏ ଲୁହ ଝରାଏ ଅଜ୍ଞାତରେ ।

ସତେ ଯେମିତି ଏସବୁ ମାୟା, ବନ୍ଧନ, ମିଥ୍ୟା, ଭଣ୍ଡାମିରୁ ନିଜକୁ ଅଲଗା କରି ନେଇଥିଲା ମିସ୍ ପ୍ରତିମା ଦାସ । ଲଣ୍ଠନ ଆଲୁଅଟାକୁ ଝରକା ପାଖ ଟେବୁଲ୍‌ରେ ରଖି ସେ ପଢୁଥିଲେ ଏକ ନଭେଲ୍ । ଏକାକୀ ଜୀବନର ଏକମାତ୍ର ସାଥୀ ତାର—ବହି ।

ଅତର୍କିତ ଭାବେ ସେ ଆବିଷ୍କାର କରିଥିଲା କାଳୀର ଖୁଲିସିବା ବାଟକୁ । ପଛେ ପଛେ ଦୌଡ଼ାଇ ଫେରାଇ ଆଣିଥିଲା ତାକୁ । "ଆତ୍ମହତ୍ୟା ମହାପାପ-ଏ ଜୀବନର ମୂଲ୍ୟ ଅଛି କାଳୀ । ବଞ୍ଚିବାକୁ ଶିଖ । ବିବାହ କରିବା ଏକମାତ୍ର ଲକ୍ଷ୍ୟ ନୁହେଁ । ଜୀବନ ସମସ୍ୟାର ସମାଧାନର ବାଟ ଅନେକ ଅଛି, ସିଧା ବାଟରେ ନହେଲେ ବି ବଙ୍କା ବାଟରେ ଯାଇ ସଫଳ ହେଲେ ଜୀବନ ସାର୍ଥକ ହେବ" କହୁଥିଲା ପ୍ରତିମା । ଦିନ ଗଡ଼ି ଚାଲିଛି, କାଳୀ ମାଟ୍ରିକ୍ ପାସ୍ କରି ଟ୍ରେନିଂ ନେଉଛି । କାଳୀ ଗାଁ ସ୍କୁଲରେ

ଶିଲେଇ ମାଷ୍ଟରଣୀ ହୋଇଛୁ, ଆହୁରି କେତେ ମୂର୍ଖ ଜନ ନାରୀ ଜୀବନକୁ ତେ ମୂଲ୍ୟବୋଧ ଶିଖାଇଛୁ ।

ସୁରେଶ, ନରେଇ ଦାଦା, ଗାଁର ଆହୁରି କେତେ ମୁଖିଆ ଲୋକ ପ୍ରତିମାର ବଦଳପାଇଁ ଚେଷ୍ଟା କରି ବିଫଳ ହୋଇଛନ୍ତି । ଶେଷରେ ସୁରେଶର ବେନାମୀ ଚିଠିରେ ପ୍ରତିମାର ବାପା ବିଚଳିତ ହୋଇ ଚିଠି ଦେଇଥିଲେ ।

ଡାକବାଲା ଚିଠି ଦେଇଗଲା । ଝିଅଙ୍କ ଜୀବନରେ ଏଇ ଚିଠି ଥିଲା ପ୍ରତିମାର ପ୍ରେରଣାର ଉତ୍ସ । ସଞ୍ଜତା, ବାଣୀ, ନିମ୍ନ, ଚିଠି ବଦଳନ୍ତି । କଏ କେଉଁଠି ବୋହୁ ହୋଇ ହିନ୍ଦୁନାରୀର ତ୍ୟାଗ ପୂତ ଜୀବନର ଆହୁତି ଦେଇଛନ୍ତି । କିନ୍ତୁ ପ୍ରତିମାର ନିପଟ ଅଜ୍ଞାତ ଗାଁ କୋଣରେ ଝିଅମାନଙ୍କପାଇଁ ସ୍କୁଲ ଗଢି ଶିକ୍ଷା ଦେବାର ଆଦର୍ଶକୁ ସେମାନେ ସ୍ୱାଗତ କରି ଚିଠି ଲେଖନ୍ତି ।

ଉଦ୍‌ବିଗ୍ନ ହୋଇ ଚିଠିକୁ ଖୋଲୁଥିଲା ପ୍ରତିମା । ବାପା ଲେଖିଥିଲେ-“ତୁ ମୋ ବଂଶର ମର୍ଯ୍ୟାଦା ତଳେ ପକାଇବାକୁ ମୁଁ ଚାହେଁନା । ସେ ଛୋଟ ଗାଁ ଟାରେ ବଦ୍‌ନାମ୍ ହେବା ଅପେକ୍ଷା, ସ୍କୁଲ ଛାଡ଼ି ଶୀଘ୍ର ଚାଲି ଆସ, ହଁ ତୋର ମଙ୍ଗଳ କାମନା କରି ମୁଁ ତୋ ବାହାଘର ଠିକ କରିସାରିଛି । ତୋର ସ୍ୱାମୀ ଯେ ହେବ ସେ ବମ୍ବେର ଗୋଟିଏ କମ୍ପାନୀରେ ମ୍ୟାନେଜର୍ । ଟଙ୍କାରେ ତୋର ଅଭାବ ରହିବନାହିଁ । ତାଛଡ଼ା ତୋର ମାଷ୍ଟରଣୀ କାମ-ସୁଦ୍ଧି ଗୋଟାଏ ଛୋଟ ଗାଁରେ, ସେ ଘୃଣା କରେ । ଏ ଯୁଗରେ କୌଣସି କାମରେ ନେଇଛୁ ନେବା ମାନେ ନାନା ସମାଲୋଚନା ଶୁଣିବାକୁ ପଡ଼ିବ । ସେ ସବୁ ଆମଭଳି ସମ୍ଭ୍ରାନ୍ତ ଘରର ଝିଅମାନଙ୍କପାଇଁ ନୁହେଁ ।

ଗାଁ ଲୋକେ ଅନ୍ଧାରରେ ରହିବା ତାଙ୍କ ଭାଗ୍ୟରେ ଅଛି, ତୁ ବା କ’ଣ ଆଦର୍ଶ ଦେଖାଇ କରିପାରିବୁ, ସେସବୁ ମିଛ.. ତୁ ମୋ କଥା ମାନି ସେଠାରୁ ଚାଲିଆସ ।”

ଆଉ ଭଲମନ୍ଦ ଖବର ଜାଣିବାପାଇଁ ପ୍ରତିମା ପ୍ରସ୍ତୁତ ନଥିଲା । ଚିଠିଟାକୁ ଘୃଣାରେ ସେ ଟେବୁଲ ଉପରେ ପକାଇ ଦେଲା ।

ଉଃ, ମୋ ବାପା ହୋଇ ପୁଣି ଏକଥା ଲେଖି ପାରିଲେ, ମୋର ଭବି ସ୍ୱାମୀ.. ଘୃଣା କରେ ଆଦର୍ଶକୁ । ମୋର ଭଡାର ଟଙ୍କା ବମ୍ବେରେ, ଇତ୍ୟାଦି..... ହଁ, ସବୁ ସତ ହୋଇପାରେ ।

କିନ୍ତୁ ଏ ଗାଁର ମମତା କର୍ତ୍ତବ୍ୟ, କେତେ ନାରୀମନର ତରଙ୍ଗ ସବୁ କ’ଣ ମିଛ ତାହାହେଲେ ? ...

ମନରେ ତା’ର ଅନେକ ପ୍ରଶ୍ନର ଢେଉ ମୁଣ୍ଡ ପେଣ୍ଡୁଥିଲା । ଅଗିଲୁହରେ ସେ ବନ୍ଧୁଣାପଥ ସଜାଉଥିଲା- ପୁଣି ତାକୁ ଗଢିବାକୁ ହେବ ନୂଆ ଦୁନିଆ, ଏଥର ଗାଁରେ ନୁହେଁ, ସହରରେ, ଡାଲି, କମଳ ଓ ଆହୁରି ଅନେକ ନାଲିବରେ ଠିଆ ହୋଇଥିଲେ । ସମସ୍ତଙ୍କ ଆଖିରୁ ଅଶ୍ରୁଧାର. ସତେ ଯେମିତି କେଉଁ ଏକ ମହାସମୁଦ୍ର ତରଙ୍ଗ ହୋଇ ବୋହି ଯାଉଥିଲା ।





# ସାଂପ୍ରତିକ ଭାରତୀୟ ଗଣତନ୍ତ୍ର ଓ ଜରୁରିକାଳୀନ ପରିସ୍ଥିତି

ଶ୍ରୀ ପ୍ରତାପାଦିତ୍ୟ ମିଶ୍ର

ପ୍ରାଗୈତିହାସିକ ଯୁଗରୁ ମାନବ ଅନ୍ୟାୟ, ଅତ୍ୟାଚାର, ବ୍ୟଭିଚାର, ଭେଦଭାବ ଓ ବୈଷମ୍ୟ ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରି ନିଜର ନିରଙ୍କୁଶ ଏବଂ ସୁଖ ସ୍ୱଚ୍ଛନ୍ଦ ଜୀବନ ଯାପନ ନିମନ୍ତେ ତୀବ୍ର ସଂଗ୍ରାମ କରିଆସିଛି । ପରିଣାମରେ, ରାଷ୍ଟ୍ରରେ ହତ୍ୟା, ଷଡ଼ଯନ୍ତ୍ର, ରାଷ୍ଟ୍ରବିଦ୍ରୋହ, ଗଣବିପ୍ଳବ ତଥା ରକ୍ତପାତର ସୃଷ୍ଟି ହୋଇଛି । ଏଣୁ ସଭ୍ୟତାର କ୍ରମୋନ୍ନତି ସଙ୍ଗେ ସଙ୍ଗେ ଉଲ୍ଲିଖିତ ଶାସନପଦ୍ଧତି ବିଭିନ୍ନ ରୂପରେଖ ମଧ୍ୟରେ ଗତିକରି କେତେକ ପରିମାଣରେ ପରିମାର୍ଜିତ ହୋଇଛି । ସାଂପ୍ରତିକ ରାଜନୀତି ଜଗତରେ ଯେଉଁ ଶାସନ ପଦ୍ଧତି ସର୍ବଜ ସମାଦୃତ ତଥା ବହୁବାଞ୍ଛିତ ତାହା ହେଉଛି 'ଗଣତନ୍ତ୍ର ଶାସନ' । ଥରେ ଯୁକ୍ତରାଷ୍ଟ୍ର ଆମେରିକାର ପୂର୍ବତନ ରାଷ୍ଟ୍ରପତି ଅବ୍ରାହାମ୍ ଲିଙ୍କନ ଏହାର ପ୍ରକୃତ ରୂପରେଖ ତଥା ସଂଜ୍ଞାକୁ ପ୍ରାଞ୍ଜଳ ଭାବରେ ବୁଝାଇବାକୁ ଯାଇ କହିଥିଲେ "ଗଣତନ୍ତ୍ର ଏପରି ଏକ ସରକାର ଯାହାକି ଜନସାଧାରଣଙ୍କ ଦ୍ୱାରା ଗଠିତ ହୋଇଥାଏ—ଜନସାଧାରଣଙ୍କ ନିମିତ୍ତ ଗଠିତ ହୋଇଥାଏ ଓ ଏହା ପୂର୍ଣ୍ଣତଃ ଜନସାଧାରଣଙ୍କର ହିଁ ସରକାର ।"

ଉପରୋକ୍ତ ଗଣତାନ୍ତ୍ରିକ ଶାସନ, ଯାହାର ଉତ୍କର୍ଷ ତଥା ଜନପ୍ରିୟତା ସଂପ୍ରତି ରାଜନୀତି-ଜଗତରେ ସର୍ବଜ ଆଦୃତ ତାହାର ପ୍ରଥମ ପ୍ରଚଳନ ଅଷ୍ଟାଦଶ ଶତାବ୍ଦୀର ଅନ୍ତିମ ଭାଗରେ ୟୁନାନ ରାଜ୍ୟରେ ହୋଇଥିଲା । ଏହି ରାଜ୍ୟରେ ରାଜା ଶାସନ ମୁଖ୍ୟ ହୋଇଥିଲେ ମଧ୍ୟ ଅନେକ ଜଟିଳ ସମସ୍ୟାମାନ ରାଜ୍ୟର ବିଶିଷ୍ଟ ତଥା ବିଜ୍ଞ ବ୍ୟକ୍ତିମାନଙ୍କ ପରାମର୍ଶକ୍ରମେ ସମାଧାନ କରାଯାଉଥିଲା । କ୍ରମଶଃ ଏହି ଶାସନ ପଦ୍ଧତି ଲୋକପ୍ରିୟତା ହାସଲ କରିବାରୁ ଫ୍ରାନ୍ସ, ସ୍ପେନ୍, ଇଟାଲୀ, ଜର୍ମାନ ପ୍ରଭୃତି ଦେଶମାନଙ୍କରୁ କ୍ରମେ କ୍ରମେ ଗଣବିପ୍ଳବ ତଥା ରାଷ୍ଟ୍ରବିଦ୍ରୋହ ଦ୍ୱାରା ରାଜତନ୍ତ୍ରର ବିଲୋପ ଘଟି ଗଣତନ୍ତ୍ର ଶାସନର ଆବିର୍ଭାବ ଘଟିଥିଲା । ବର୍ତ୍ତମାନ ପୃଥିବୀର ଅଧିକାଂଶ ରାଷ୍ଟ୍ର ଏହି ଗଣତାନ୍ତ୍ରିକ ଶାସନ ପ୍ରତି ଅନୁରାଗ ପ୍ରକାଶ କରି ତା'ର ପଦ୍ଧତିକୁ ଅନୁସରଣ କରିଛନ୍ତି ।

ଗଣତନ୍ତ୍ର ଶାସନକୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ଏହି ଶାସନର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ମନୁଷ୍ୟର ଅନ୍ତର୍ନିହିତ ଜନ୍ମଗତ ମୌଳିକ ଅଧିକାରକୁ ସମାଜରେ ଉପସ୍ଥାପିତ କରି, ପ୍ରତ୍ୟେକ ବ୍ୟକ୍ତିକୁ ସ୍ୱାଧୀନ ଭାବରେ ନିଜ ମତ ପ୍ରଦାନ କରିବାର ପୂର୍ଣ୍ଣ ସୁଯୋଗ ଦେଇ, ସମାଜର ସ୍ୱାଧୀନ ଚିନ୍ତାଧାରାକୁ ବିକାଶୋନ୍ମୁଖୀ କରାଇବା । ଏହି ଶାସନରେ ଧନୀ, ଦରିଦ୍ର, ଶିକ୍ଷିତ, ଅଶିକ୍ଷିତ ଇତ୍ୟାଦି ସମସ୍ତଙ୍କର ସାମାଜିକ ତଥା ରାଜନୈତିକ ଅଧିକାର ସମାନ ।

ତେଣୁ ଜନତାର ସିଦ୍ଧାନ୍ତ ହିଁ ସର୍ବୋତ୍କୃଷ୍ଟ ଏବଂ ସର୍ବଶେଷ ସିଦ୍ଧାନ୍ତ ।

ସାମ୍ପ୍ରତିକ ବିଶ୍ୱର ରାଜନୈତିକ ପରିସ୍ଥିତିରୁ ଜଣାଯାଏ ଯେ, ଦେଶରେ ଗଣତନ୍ତ୍ର ଶାସନକୁ ପ୍ରତିଷ୍ଠା କରିବା ଅପେକ୍ଷା ଏହାକୁ ସୁବ୍ୟବସ୍ଥିତରୂପେ ପରିଚାଳନା କରିବା କଷ୍ଟକର ବ୍ୟାପାର । ରାଷ୍ଟ୍ରର ପ୍ରତ୍ୟେକ ନାଗରିକ ଏହି ଶାସନ-ପଦ୍ଧତିର ମହତ୍ତ୍ୱକୁ ହୃଦୟଙ୍ଗମ କରି ନିଜର ଶୃଙ୍ଖଳିତ ଜୀବନ ତଥା ଦାୟିତ୍ୱରେ ଅବହେଳା ପ୍ରଦର୍ଶନ କଲେ ଏହି ଶାସନର ଅସ୍ତିତ୍ୱ ସନ୍ଦେହଜନକ ହୋଇଥାଏ । କାରଣ (୧) ସବୁ ଦେଶରେ ପ୍ରଭାବଶାଳୀ, ଧୂର୍ତ୍ତ, ସ୍ୱାର୍ଥାନ୍ୱେଷୀ ତଥା କ୍ଷମତାପିପାସୁ ବ୍ୟକ୍ତିମାନେ ନିରକ୍ଷର ଜନତାଙ୍କୁ ଅନାୟାସରେ ଛଳନା ଏବଂ ଅର୍ଥଲୋଭ ପ୍ରଦର୍ଶନ କରି ସମାଜରେ ନିଜକୁ ପ୍ରତିଷ୍ଠିତ କରିବାକୁ ସଦା ଚେଷ୍ଟିତ ଥାଆନ୍ତି । ତେଣୁ ଜନତାଙ୍କର ବିକାଶ ନିମନ୍ତେ ରାଷ୍ଟ୍ରରେ ଶିକ୍ଷାର ଆମୂଳଚୂଳ ପ୍ରସାର ଏକାନ୍ତ ବାଞ୍ଛନୀୟ । (୨) ଯେଉଁଠାରେ ସଂଖ୍ୟାଗରିଷ୍ଠ ଜନସାଧାରଣ କର୍ମକାତର, କର୍ତ୍ତବ୍ୟବିମୁଖ, ବିଶୃଙ୍ଖଳିତ ଭାବ ଏବଂ ସ୍ୱେଚ୍ଛାରେ ରାଷ୍ଟ୍ରର ନିର୍ମାଣ ନିମନ୍ତେ କଠିନ କାର୍ଯ୍ୟ କରିବାକୁ ଅକ୍ଷମତା ପ୍ରଦର୍ଶନ କରନ୍ତି ସେମାନଙ୍କ ଦ୍ୱାରା ଜନକଲ୍ୟାଣର ସ୍ୱପ୍ନ ଏକ ପ୍ରହେଳିକା ମାତ୍ର । ତେଣୁ ଏହାର ପ୍ରଗତି ନିମନ୍ତେ ରାଷ୍ଟ୍ରରେ ଅତି କମ୍‌ରେ ଦୁଇଟି ପ୍ରଗତିଶୀଳ, ସୁସ୍ଥ ତଥା ସୁସଙ୍ଗଠିତ ରାଜନୈତିକ ଦଳର ସ୍ଥିତି ଅପରିହାର୍ଯ୍ୟ । ଉକ୍ତ ଯୁଗଳ ରାଜନୈତିକ ଦଳ ମଧ୍ୟରୁ ନିର୍ବାଚନରେ ବିଜୟୀ ଦଳ ଶାସନର ମାନଦଣ୍ଡ ଧରି ଦେଶ ପରିଚାଳନା କରନ୍ତି ଏବଂ ବିଜିତ ଦଳ ସେମାନଙ୍କର ସ୍ୱେଚ୍ଛାଚାରିତାର ଅବରୋଧ ତଥା ଜନସାଧାରଣଙ୍କର କଲ୍ୟାଣ ନିମନ୍ତେ ଚେଷ୍ଟିତ ରହିବା ଉଚିତ୍ । (୩) ଦେଶରେ ଅନେକ ପ୍ରକାର ସମ୍ବାଦପତ୍ର ଛପାଯିବା ଆବଶ୍ୟକ । ତଦ୍ୱାରା ଶାସକ ତଥା ଶାସିତ-ମାନଙ୍କ ମଧ୍ୟରେ ମଧୁର ସମ୍ପର୍କ ସ୍ଥାପନ କରିବା ପାଇଁ ଏହା ଏକ ଅଦ୍ୱିତୀୟ ମାଧ୍ୟମ ହୋଇ ରହିପାରିବ । (୪) ଅର୍ଥନୈତିକ ଦୃଷ୍ଟିକୋଣରୁ ବିଚାର କରାଗଲେ ଜଣାଯାଏ ଯେ ଦେଶର ଅର୍ଥନୈତିକ ପରିସ୍ଥିତି ଏକ ମଧ୍ୟମ ସ୍ତରରେ ଅବସ୍ଥାପିତ ହେବା ବାଞ୍ଛନୀୟ । ନଚେତ୍ ଦେଶର ଗଣତନ୍ତ୍ର ଶାସନ ପୁଞ୍ଜିପତିଙ୍କର ଶିକାର ହୋଇ ସଂକଟର ଚରମ ପର୍ଯ୍ୟାୟରେ ପହଞ୍ଚିବ ବା ପ୍ରଭାବଶାଳୀ ରାଷ୍ଟ୍ରମାନଙ୍କ କବଳରେ ପଡ଼ି ନିଜର ଅସ୍ତିତ୍ୱ ହରାଇବ । (୫) ସଂକୀର୍ଣ୍ଣମନା ସ୍ୱାର୍ଥ ଚକ୍ରାନ୍ତରୁ ନିଜକୁ ଦୂରରେ ରଖି ସଚ୍ଚୋଟ, ଉଦ୍ୟମଶୀଳ, ଦାୟିତ୍ୱବାନ ତଥା ଜ୍ଞାନୀ ବ୍ୟକ୍ତିଙ୍କୁ ନିର୍ବାଚନରେ ସମର୍ଥନ ପ୍ରଦାନ କରି ନିର୍ବାଚିତ କରିବା ଉଚିତ୍ । ନଚେତ୍ କ୍ଷଣିକ ଅର୍ଥଲୋଭ ଏବଂ ଅନ୍ୟାନ୍ୟ ପ୍ରଲୋଭନ ତଥା ଛଳନାର ବଶୀଭୂତ ହୋଇ ଏକ ଅଯୋଗ୍ୟ, ଦୁର୍ନୀତିଗ୍ରସ୍ତ, ବିଶୃଙ୍ଖଳିତ ଭାବରେ ଜୀବନଯାପନ କରୁଥିବା ବ୍ୟକ୍ତିଙ୍କୁ ନିର୍ବାଚିତ କଲେ ରାଷ୍ଟ୍ରରେ ଶାସନପଦ୍ଧତି କ୍ରମଶଃ ଦୁର୍ବଳ ତଥା ଦୁର୍ନୀତିଗ୍ରସ୍ତ ହୁଏ । ଦେଶରେ ଜନସାଧାରଣଙ୍କର କଲ୍ୟାଣ କରିବା ଦୂରେ ଥାଉ, ସେମାନେ ନିଜର ସ୍ୱାର୍ଥ ଚକ୍ରାନ୍ତରେ ଲିପ୍ତ ରହନ୍ତି । ତେଣୁ ଶାସନପଦ୍ଧତିକୁ ସୁଦୃଢ଼ ଏବଂ ଦୀର୍ଘସ୍ଥାୟୀ କରିବାପାଇଁ ଦାୟିତ୍ୱବାନ, ଜ୍ଞାନୀ ବ୍ୟକ୍ତି ଶାସନ ଗାଦିକୁ ଯିବା ନିତାନ୍ତ ଆବଶ୍ୟକ । (୬) ଗଣତନ୍ତ୍ରରେ ଲୋକ ଚରିତ୍ରର ସହନଶୀଳତା ଗଣତନ୍ତ୍ରର ସଫଳ ବିକାଶ ନିମନ୍ତେ ଏକ ଅପରିହାର୍ଯ୍ୟ ଆବଶ୍ୟକତା । ସଂଖ୍ୟାଗରିଷ୍ଠ ଜନମତ ପ୍ରତି ସମର୍ଥନ ଜଣାଇ ତାକୁ ସମ୍ମାନିତ କରିବା ସଂଖ୍ୟାଲଘିଷ୍ଠ ଦଳର କର୍ତ୍ତବ୍ୟ । ଗଣତାନ୍ତ୍ରିକ ରାଷ୍ଟ୍ରରେ ଯେତେବେଳେ ଏକାଧିକ ରାଜନୈତିକ ଦଳକୁ ସ୍ୱୀକାର କରାଯାଇଛି ତେଣୁ ପ୍ରତ୍ୟେକଙ୍କର ଭିନ୍ନ ଭିନ୍ନ ମତ ହେବା ବିଚିତ୍ର ନୁହେଁ । ପ୍ରତ୍ୟେକ ରାଜନୈତିକ ଦଳ ମଧ୍ୟରେ ମତଭେଦ ଘଟିଲେ ମଧ୍ୟ ସଂଖ୍ୟାଗରିଷ୍ଠ ଦଳର ସମ୍ମାନ, କୃତିତ୍ୱ ତଥା କାର୍ଯ୍ୟକଳାପକୁ ସଂଖ୍ୟାଲଘିଷ୍ଠ ନେତାମାନେ ସ୍ୱୀକାର କରିବା ଏକାନ୍ତ ବାଞ୍ଛନୀୟ ।

ବ୍ରିଟିଶ ଶାସନକୁ ଅହିଂସା ଆନ୍ଦୋଳନ ଦ୍ୱାରା ପରାଜିତ କରି ଆମର ପ୍ରିୟ ଜନ୍ମଭୂମି ଭାରତ ଶତାବ୍ଦୀବ୍ୟାପୀ ପରାଧୀନତାର ଅନ୍ଧକାରରୁ ମୁକ୍ତିଲାଭ କରିଛି । କିନ୍ତୁ ବିଶ୍ୱର ସମସ୍ତ ପ୍ରଗତିଶୀଳ ରାଷ୍ଟ୍ରମାନଙ୍କ ସହିତ ସମତାଳରେ ଗତି କରିବାକୁ ଆମେ ଯେଉଁ ସଂକଳ୍ପ କରିଥିଲୁ ତାହା ଏ ପର୍ଯ୍ୟନ୍ତ ଫଳପ୍ରଦ ହୋଇପାରି ନାହିଁ । ବାପୁଜୀଙ୍କ କଳ୍ପିତ "ରାମରାଜ୍ୟ"ର ସ୍ୱପ୍ନ ଆଜି ସଫଳ ହେବାକୁ ଉପକ୍ରମ ମଧ୍ୟ କରିନାହିଁ । ଦେଶରେ ଲାଞ୍ଚ, ମିଛ ତଥା ସଂକୀର୍ଣ୍ଣମନା ସ୍ୱାର୍ଥଚକ୍ରାନ୍ତର ପ୍ରାବଲ୍ୟ ଏତେ ବଢ଼ିଯାଇଛି ଯେ, ତାହା ଆମ ଜାତୀୟ ଜୀବନକୁ ଧ୍ୱସ୍ତ କରିଦେଉଛି । ଆମେ ନିଜ ହାତରେ ନିଜର ସ୍ୱାଧୀନ ରାଷ୍ଟ୍ରକୁ ଶାସନ କରିବାକୁ ଅକ୍ଷମ ବୋଲି ଦର୍ଶାଇ ଦେଉଛୁ । ବିଭିନ୍ନ ରାଜନୈତିକ ଦଳ ନିଜ ନିଜ ସ୍ୱାର୍ଥ ହାସଲ ନିମନ୍ତେ ଏପରି ଉଦ୍‌ଭ୍ରାନ୍ତ ହୋଇପଡ଼ିଛନ୍ତି ଯେ ଏହା ଆମ ଜାତୀୟ ସଂଗଠନକୁ ଦୁର୍ବଳ କରିଦେଉଛି । ଧନୀ, ପୁଞ୍ଜିପତି, ସ୍ୱାର୍ଥାନ୍ୱେଷୀ ଓ ଧୂର୍ତ୍ତ ବ୍ୟକ୍ତିମାନେ ନିରୀହ ଓ ନିରକ୍ଷର ଜନତାଙ୍କୁ ଅନାୟାସରେ ପ୍ରଲୋଭିତ କରାଇ ସମାଜରେ ନିଜକୁ ପ୍ରତିଷ୍ଠିତ କରିବାକୁ ଚେଷ୍ଟିତ । ଏହାହିଁ ହେଉଛି ଏପରି ଏକ ବୃହତ୍ ରାଷ୍ଟ୍ରରେ ଗଣତନ୍ତ୍ରର ଅବସ୍ଥା । ତଥାପି, ଏହାର ସପକ୍ଷରେ ଗତ ୨୮ ବର୍ଷର ସ୍ୱଳ୍ପ କାଳ ମଧ୍ୟରେ ଆମର ଏହି ଗଣତନ୍ତ୍ର-ସୌଧର ଭିତ୍ତିଭୂମି ଯଥେଷ୍ଟ ସୁଦୃଢ଼ ଏବଂ ସଚେତନଶୀଳ ହୋଇପାରିଛି । ଗତ ଚୀନ ଓ ପାକିସ୍ଥାନ ଯୁଦ୍ଧ ସମୟରେ ବିଶେଷତଃ ବଙ୍ଗଳାଦେଶର ମୁକ୍ତିସଂଗ୍ରାମ-

ତେବେ ଆମେ ଆମର ଜାତୀୟତା, ସଂହତି, ଶକ୍ତି ଓ ସାମର୍ଥ୍ୟର ଆଦର୍ଶ କେଉଁପରି ଭାବରେ ପ୍ରତିପାଦିତ କରିପାରିବୁ ତାହା ଅନିର୍ଣ୍ଣେୟ ।

ଗଣତନ୍ତ୍ର ଶାସନ ଏକ ପ୍ରତିନିଧିମୂଳକ ଶାସନ ହୋଇଥିବାରୁ ରାଷ୍ଟ୍ରର ଶାସନକର୍ତ୍ତା ଆର୍ଥିକ, ରାଜନୈତିକ ଏବଂ ସାମାଜିକ ଦିଗପ୍ରତି ସଚେତନ ଓ ନିଷ୍ଠାଶୀଳ । ରାଷ୍ଟ୍ରକୁ ଅସାମ୍ୟ, ବିଚ୍ଛେଦର ଅପସାରଣ ଦ୍ୱାରା ଏକ ସୁସ୍ଥ, ସୁସଂଗଠିତ ଏବଂ ଶକ୍ତ ରାଷ୍ଟ୍ର ଗଠନ ନିମନ୍ତେ ସେମାନଙ୍କର ଭୂମିକା ଉଲ୍ଲେଖଯୋଗ୍ୟ ହୋଇପାରିଛି । ଦେଶର ଶାସନ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବରେ ପରିଚାଳିତ ହେଉଥିବାରୁ ଜନସାଧାରଣଙ୍କର ରାଜନୈତିକ ଜ୍ଞାନର କ୍ରମଶଃ ଅଭିବୃଦ୍ଧି ଘଟୁଛି । ପରିଶେଷରେ, ରାଷ୍ଟ୍ରବିପ୍ଳବ, ଷଡ଼ଯନ୍ତ୍ର ଏବଂ ହତ୍ୟାକାଣ୍ଡର ସମ୍ଭାବନାକୁ ଦୂରୀଭୂତ କରି ଗଣତନ୍ତ୍ର ଶାସନ ଜନସାଧାରଣଙ୍କୁ ଏକ ଜାତୀୟ ମହାଭାବନାରେ ଉଦ୍ବୁଦ୍ଧ କରିପାରିଛି ।

ସଂପ୍ରତି ବିଶ୍ୱରେ ସାମ୍ୟବାଦ ଏବଂ ସାମ୍ରାଜ୍ୟବାଦ ନାମକ ଦୁଇଟି ବାଦ ସୃଷ୍ଟି ହୋଇଛି । ଏହି ପରସ୍ପର ମତବିରୋଧୀ ରାଷ୍ଟ୍ରମାନଙ୍କ ଅଶାନ୍ତିର ବହ୍ନିବଳୟ ଦେଶ–ମାନଙ୍କୁ ଘେରିଛି । ତେଣୁ ବର୍ତ୍ତମାନ ନିଜ ଦେଶର ପ୍ରତିରକ୍ଷା ନିମନ୍ତେ କ୍ଷୁଦ୍ର ବୃହତ୍ ସମସ୍ତ ରାଷ୍ଟ୍ର ଅସ୍ତ୍ରାଗାରଭୁକ୍ତ ଅସ୍ତ୍ରଶସ୍ତ୍ର ଇତ୍ୟାଦି ଅର୍ଜନ କରିବାରେ ଲିପ୍ତ ଅଛନ୍ତି । ତେଣୁ ଶାନ୍ତିପୂର୍ଣ୍ଣ ସମୟ ବା ସଙ୍କଟ ସମୟ ଯାହା ହେଉ ନା କାହିଁକି ସର୍ବଦା ଆମକୁ ଆମର ଜାତୀୟ ପ୍ରତିରକ୍ଷା ନିମନ୍ତେ ସଚେତନ ରହିବାକୁ ହେବ । ତେଣୁ ଆମର ଯୋଜନାରେ ପ୍ରତିରକ୍ଷା ବାବଦ ଖର୍ଚ୍ଚ ଅବିଚ୍ଛେଦ୍ୟ ଅଙ୍ଗ ସ୍ୱରୂପ ରହିବ ।

ଇତିହାସର ପୃଷ୍ଠାକୁ ଓଲଟାଇ ଦେଖିଲେ ଜଣାଯାଏ ଯେ, ଆମର ମାତୃଭୂମି ଭାରତବର୍ଷ ତା'ର ବୈଭବ ପାଇଁ ସବୁକାଳେ ବିଶ୍ୱର ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ଲୋଲୁପଦୃଷ୍ଟିର ଶିକାର ହୋଇଛି । ଏଥିନିମନ୍ତେ ତାକୁ କମ୍ କଷ୍ଟ, ଲାଞ୍ଛନା, ତ୍ୟାଗ, ବଳିଦାନ ଇତ୍ୟାଦି ମଧ୍ୟଦେଇ ଯିବାକୁ ହୋଇନାହିଁ ।

ଦେଶ ବିଭାଜନ ପରେ ପାକିସ୍ଥାନର ଉତ୍କଟ ବୈରିଭାବ, କାଶ୍ମୀର ସମସ୍ୟାର ଜଟିଳତା ଏବଂ ତା' ସହିତ ସାମ୍ରାଜ୍ୟବାଦୀ ଚୀନର ଧନ, ଜନ, ଆକ୍ରମଣାତ୍ମକ ମନୋଭାବ ଆମର ବହୁବାଞ୍ଛିତ ମହାମୂଲ୍ୟ ସ୍ୱାଧୀନତା, ଗଣତନ୍ତ୍ର ତଥା ଶାନ୍ତି ଓ ଶୃଙ୍ଖଳାରେ ବ୍ୟାଘାତ ସୃଷ୍ଟି କରୁଛି ଏବଂ ଆମକୁ ସର୍ବଦା ଏକ ସଙ୍କଟ-ସଙ୍କୁଳ ମନୋଭାବ ନେଇ ଚଳିବାକୁ ପଡ଼ୁଛି । ତେଣୁ ଦେଶର ଆବାଳ ବୃଦ୍ଧବନିତାଙ୍କ ହୃଦୟରେ ଦେଶ–ପ୍ରୀତିର ଏକ ଅପୂର୍ବ ଜାଗରଣ ସୃଷ୍ଟି କରିବା ତଥା ଦେଶର ପ୍ରାଚୀନ ସଭ୍ୟତା ଓ ସଂସ୍କୃତି ସହିତ ନବଯୁଗର ସଭ୍ୟତା ଓ ସଂସ୍କୃତିର ସମ୍ମିଶ୍ରଣର ମର୍ଯ୍ୟାଦାକୁ ଚିର ଅକ୍ଷୁର୍ଣ୍ଣ ରଖିବା–ପାଇଁ ଆମକୁ ସର୍ବଦା ଚେଷ୍ଟା କରିବାକୁ ପଡ଼ିବ ।

ଦେଶର ସଂକଟମୟ ବା ଜରୁରୀକାଳୀନ ପରିସ୍ଥିତିରେ ସାଧାରଣ ନାଗରିକଠାରୁ ଆରମ୍ଭକରି ଛାତ୍ର, ଶିକ୍ଷକ, କୃଷକ, ବ୍ୟବସାୟୀ, କର୍ମଚାରୀ ପ୍ରତ୍ୟେକଙ୍କର ଭିନ୍ନ ଭିନ୍ନ ଦାୟିତ୍ୱ ଏବଂ କର୍ତ୍ତବ୍ୟ ରହିଛି । ପୁଣି ରାଷ୍ଟ୍ରର ଜାତୀୟ ଜୀବନକୁ ସୁସଂହତ ତଥା ପ୍ରତିରକ୍ଷା ଶକ୍ତିକୁ ବର୍ଦ୍ଧିତ କରିବା ସଙ୍ଗେ ସଙ୍ଗେ ଆମର ଶିକ୍ଷା ଓ ଶାସନ ପଦ୍ଧତିକୁ ସଂଶୋଧନ କରି ଯୋଜନାକୁ ପୁନର୍ଗଠିତ କରିବାକୁ ପଡ଼ିବ । ମାତ୍ର ଦେଶରେ କେବଳ ସଶସ୍ତ୍ର ସୈନିକ ତଥା ଅସ୍ତ୍ରଶସ୍ତ୍ର ସରଞ୍ଜାମର ବୃଦ୍ଧି ଯେ ଆଧୁନିକ ପ୍ରତିରକ୍ଷା ଶକ୍ତି ବୃଦ୍ଧିର ପରିଚାୟକ, ଏହା ଏକ ଭ୍ରାନ୍ତ ଧାରଣା ।

ଆମର ବୀର ଯବାନମାନଙ୍କୁ ରଣୋତ୍ସାହକୁ ପ୍ରେରଣା ଦେଇ ଆମେ ଉଦାସୀନ ଭାବେ ବସି ରହିବା ଅନୁଚିତ । ସ୍ୱାଧୀନ ନାଗରିକ ହିସାବରେ ଆମର ନୈତିକ ଦୃଢ଼ତା, ଐକ୍ୟବଦ୍ଧ ଓ ସଂଘବଦ୍ଧ ଶକ୍ତି ତଥା ଜାତୀୟ ମହାଭାବନାରେ ଯେତେବେଳେ ବୀର ଯବାନର ଶରୀରରେ ତପ୍ତ ରକ୍ତ ପ୍ରବାହିତ ହେବ ସେତେବେଳେ କୃଷକ, ଶ୍ରମିକ ହିସାବରେ ଆମେ ସେମାନଙ୍କର ପେଟ ଏବଂ ବନ୍ଧୁକକୁ ଖାଦ୍ୟ ଯୋଗାଇବା ଉଚିତ । ତେଣୁ ଅଧିକ ଉତ୍ପାଦନ ହିଁ ଜାତୀୟ ପ୍ରତିରକ୍ଷାର ସର୍ବପ୍ରଥମ ଆବଶ୍ୟକତା । ଯେଥିପାଇଁ ସ୍ୱର୍ଗତ ଲାଲବାହାଦୂର ଶାସ୍ତ୍ରୀ 'ଜୟ ଯବାନ' ସହିତ 'ଜୟ କିଷାନ' ଧ୍ୱନି ଦେଇଥିଲେ ।

ସାମ୍ପ୍ରଦାୟିକ ଭେଦଭାବ ଓ ସଂଘର୍ଷ, ନିଜର ସଂକୀର୍ଣ୍ଣ-ତମ ସ୍ୱାର୍ଥ ଉଦ୍ଦେଶ୍ୟରେ ଧର୍ମଘଟ, ହରତାଳ ଓ ଅସହଯୋଗ ଇତ୍ୟାଦି କାର୍ଯ୍ୟ ସମ୍ପୂର୍ଣ୍ଣ ଅବାଞ୍ଛନୀୟ ଏବଂ ନୈତିକତା ବିରୋଧୀ । ସରକାରୀ ବେସରକାରୀ ସମସ୍ତ ଅନୁଷ୍ଠାନରେ କର୍ମଚାରୀମାନେ ନିଷ୍ଠାପର ଭାବ ପ୍ରଦର୍ଶନ କରିବା ବିଧେୟ । ଶତ୍ରୁର ମନ୍ଦବାକ୍ୟ ଓ ମିଥ୍ୟା ପ୍ରଚାରକୁ କର୍ଣ୍ଣପାତ ନ କରି ଅବିଚଳିତ ଭାବରେ ଆପଣାର ନୈତିକ ଦୃଢ଼ତାକୁ ଆହୁରି ସୁଦୃଢ଼ କରିବା ଉଚିତ ।

କିଛି ଦିନ ପୂର୍ବରୁ ଦେଶରେ ଜନସାଧାରଣ କଳା-ବଜାରୀ, ଦୁର୍ନୀତି ତଥା ଲାଞ୍ଚଖୋର ବ୍ୟବସାୟୀମାନଙ୍କର ପରିବେଷ୍ଟନୀରେ ଏପରି ଭାବେ ବାନ୍ଧି ହୋଇ ଯାଇଥିଲେ ଯେ ସେମାନଙ୍କର ବିରୁଦ୍ଧତା ଉଠାଇବାକୁ କର୍ଣ୍ଣପାତ କରିବାକୁ କେହି ଇଚ୍ଛା କରୁ ନ ଥିଲେ । ଏହି ଦୁର୍ନୀତି ଏକ ମହାମାରୀ ପରି ସମଗ୍ର ଦେଶବାସୀଙ୍କୁ ଗ୍ରାସ କରିଥିଲା । ତେଣୁ ହିମାଳୟଠାରୁ କୁମାରିକା ଯାଏ ଦେଶରେ ବିସ୍ତୃତ ଦୁର୍ନୀତିଗ୍ରସ୍ତ ତଥା ସ୍ୱାର୍ଥପର ଲାଞ୍ଚଖୋର ବ୍ୟବସାୟୀ–

ମାନଙ୍କର ଜନସାଧାରଣଙ୍କ ପ୍ରତି ଅନ୍ୟାୟ ଚରମ ପର୍ଯ୍ୟାୟରେ ଅବତୀର୍ଣ୍ଣ ହୋଇଥିଲା । ତେଣୁ ଦେଶର ଏପରି ଅସ୍ୱାଭାବିକ ଅବସ୍ଥା ସମ୍ଭାଳିବାପାଇଁ ଆମର ରାଷ୍ଟ୍ରପତି ଗତ ଦେଢ଼ ବର୍ଷ ହେଲା ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରି କରିଛନ୍ତି ।

ଏହି ଜରୁରୀକାଳୀନ ପରିସ୍ଥିତି ଜାରି ହେବା ପରେ ଦେଶରେ ଏକ ନୂତନ ତଥା ଶାନ୍ତ ବାତାବରଣ ଖେଳିଯାଇଛି । ସରକାର ବିଭିନ୍ନ କଳାବଜାରି, ସ୍ୱାର୍ଥ ଶ୍ରେଣୀ ବ୍ୟବସାୟୀ, ପୁଞ୍ଜିପତି ତଥା ଆୟକର, ସମ୍ପତ୍ତିକର ତଥା ଅନ୍ୟାନ୍ୟ କର ଫାଙ୍କିଥିବା ବ୍ୟକ୍ତିମାନଙ୍କ ଗୃହକୁ ଅଚାନକ ଖାନତଲାସ କରି ପ୍ରଚୁର ପରିମାଣରେ ସୁନାରୁପା ତଥା ଅନ୍ୟାନ୍ୟ ଲୁକ୍କାୟିତ ମୂଲ୍ୟବାନ ଦ୍ରବ୍ୟମାନ ଉଦ୍ଧାର କରୁଛନ୍ତି ଏବଂ ସେମାନଙ୍କୁ ମିସା (Maintenance of Internal Security Act) ଆଇନ୍ ଅନୁଯାୟୀ ଗିରଫ କରୁଛନ୍ତି । ତଦ୍ୱାରା ଅସାଧୁ ବ୍ୟବସାୟୀମାନଙ୍କ ମଧ୍ୟରେ ଶୃଙ୍ଖଳା ସୃଷ୍ଟି ହୋଇଛି । ନିଜର ଲୁକ୍କାୟିତ ଅତ୍ୟାବଶ୍ୟକ ଦ୍ରବ୍ୟଗୁଡ଼ିକୁ ଲୋକଲୋଚନକୁ ଆଣିବାପାଇଁ ବାଧ୍ୟ ହେଉଛନ୍ତି ।

କେବଳ ବ୍ୟବସାୟୀ, ପୁଞ୍ଜିପତି ମହଲରେ ଯେ ଏହି ଶୃଙ୍ଖଳା ସୃଷ୍ଟି ହୋଇଛି ତାହା ନୁହେଁ ପ୍ରତ୍ୟେକ ସରକାରୀ ଓ ବେସରକାରୀ ଅନୁଷ୍ଠାନରେ ମଧ୍ୟ ଏହାର ପ୍ରଭାବ ପଡ଼ିଛି । ଯେଉଁ ଉଚ୍ଚ ତଥା ନିମ୍ନ ପଦସ୍ଥ କର୍ମଚାରୀମାନେ ନିଜ କାର୍ଯ୍ୟରେ ଅବହେଳା ପ୍ରଦର୍ଶନ କରୁଥିଲେ ଏବଂ ନିଜର ସ୍ୱାର୍ଥ ହାସଲ ନିମନ୍ତେ ଦୋଷାରୋପ ଏବଂ ମିଥ୍ୟାର ଆଶ୍ରୟ ନେଉଥିଲେ ସେମାନଙ୍କୁ ବଳପୂର୍ବକ ଚାକିରିରୁ ଅନ୍ତର କରାଯାଉଛି— ନଚେତ୍ ସେମାନଙ୍କର ଅବସରକାଳୀନ ଭତ୍ତା ମିଳିବ ନାହିଁ ବୋଲି ଘୋଷଣା କରାଯାଉଛି । ତଦ୍ୱାରା କର୍ମବୃନ୍ଦମାନେ ଠିକ୍ ସମୟରେ ତଥା ସଦୁପାୟ ଅବଲମ୍ବନ କରି କାର୍ଯ୍ୟକୁ ସଂପୂର୍ଣ୍ଣରୂପେ ସମାଧାନ କରିବାକୁ ଚେଷ୍ଟିତ ହେଲେଣି ।

ବର୍ତ୍ତମାନ ଦେଶର ଜାତୀୟତାକୁ ସୁଦୃଢ଼ କରି ବିଭିନ୍ନ ସ୍ଥାନରେ ଚାଲିଥିବା ଗୋଷ୍ଠୀଗତ ଷଡ଼ଯନ୍ତ୍ରକୁ ଦମନ କରିବା ପାଇଁ ପୋଲିସ ଓ ଗୋଇନ୍ଦା ବିଭାଗର ପ୍ରବଳ ତତ୍ପରତା ଲାଗି ରହିଛି । ଏଣୁ ଦେଶଦ୍ରୋହୀମାନେ ସେମାନଙ୍କର ସନ୍ଦେହୀ ଷଡ଼ଯନ୍ତ୍ରରୂପକ ଜାଲରେ ଧରାପଡ଼ୁଛନ୍ତି, ସେମାନଙ୍କୁ ଭାରତୀୟ ନିରାପତ୍ତା ଆଇନ୍ ବଳରେ ଅନାୟାସରେ ଗିରଫ କରାଯାଉଛି । ପୁଣି ପୋଲିସ୍ ଏବଂ ଗୋଇନ୍ଦାର ପ୍ରବଳ ତତ୍ପରତା ଫଳରେ ଅନେକ ସ୍ଥାନରେ 'ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ' ନାମିତ ଅନେକ ଅନୁଷ୍ଠାନକୁ ଖାନତଲାସ କରି ପ୍ରଚୁର ପରିମାଣରେ ଅସ୍ତ୍ରଶସ୍ତ୍ର, ଅର୍ଦ୍ଧସାମରିକ ପୋଷାକ ପତ୍ର ତଥା ମଶିଣ ଯନ୍ତ୍ରମାନ ଜବତ କରୁଛନ୍ତି । ଯଦିଓ ଅଦ୍ୟାପି ଏହି ଅନୁଷ୍ଠାନର ପ୍ରକୃତ କାର୍ଯ୍ୟକଳାପ ଅଗୋଚର ତଥାପି ସେମାନେ ସରକାର ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିଲେ; ତାହା ନିଃସନ୍ଦେହରେ କୁହାଯାଇପାରେ ।

ଯଦିଓ ସାମ୍ପ୍ରତିକ ଶାସନ ପଦ୍ଧତି ଆପାତତଃ କେତେକ ପରିମାଣରେ ଏକଚ୍ଛତ୍ରବାଦୀ ଶାସନ ଭଳି ଦୃଶ୍ୟ ହେଉଛି ଏବଂ ବିରୋଧୀ ଦଳର ସମାଲୋଚନାର ପାତ୍ର ହୋଇଛି, ତଥାପି ଦେଶରେ ଚାଲିଥିବା ଦୁର୍ନୀତି, ଅନ୍ୟାୟ, କଳାବଜାରି, ଲାଞ୍ଚ ଓ ମିଥ୍ୟାର ପ୍ରଚାର ଅନେକ ପରିମାଣରେ ଦୂର କରି ପାରିଛି ଏବଂ ଭବିଷ୍ୟତରେ ଏହାର ବିଲୋପ ସାଧନ ନିଶ୍ଚୟ କରିବ . ତେଣୁ ଆମ୍ଭେମାନେ ଏହି ଜରୁରୀକାଳୀନ ମହତ୍ତ୍ୱକୁ ଭଲେ ଉପଲବ୍ଧି କରି ଜନସାଧାରଣଙ୍କୁ ବିଶେଷତଃ ନିରକ୍ଷର ଜନତାକୁ ଏହାର ଉପଯୋଗିତା ବିଶେଷରୂପେ ବୁଝାଇବା ଉଚିତ ।

ଜରୁରୀକାଳୀନ ପରିସ୍ଥିତି ଘୋଷିତ ହେବା ପୂର୍ବରୁ ଯେପରି ମନଇଚ୍ଛା କାର୍ଯ୍ୟ କରିବାର ସୁଯୋଗ ମିଳୁଥିଲା, ତାହା ଆଉ ଫେରି ଆସିବାର ସମ୍ଭାବନା ନାହିଁ । ରାଜନୈତିକ ଗୁଣ୍ଡାମି ନୀତିର ଆଉ ସ୍ଥାନ ନାହିଁ । ବର୍ତ୍ତମାନ ସବୁ ଶ୍ରେଣୀର ଲୋକ ଅନୁଶାସନ ଆଚରଣ କରିବା ତଥା ସବୁ ବିଭାଗର କର୍ମଚାରୀ, ବ୍ୟବସାୟୀମାନେ ନିଜର କାର୍ଯ୍ୟରେ ଶୃଙ୍ଖଳା ଓ କର୍ତ୍ତବ୍ୟପରାୟଣତା ପ୍ରଦର୍ଶନ କରିବା ବିଧେୟ । ଏହି ପରିସ୍ଥିତି ଜାତୀୟ ଜୀବନରେ ଏକ ନୂତନ ଯୁଗ ଆଣି ପାରିଛି । ଗରିବ, ହରିଜନ ତଥା ଆଦିବାସୀମାନଙ୍କୁ ସମ୍ପୂର୍ଣ୍ଣ ସୁବିଧା ସୁଯୋଗ ମିଳୁ ନଥିବାରୁ ତଥା ସେମାନଙ୍କର ନିରକ୍ଷରତାର ସୁଯୋଗ ନେଇ ସେମାନଙ୍କ ଉପରେ ଅତ୍ୟାଚାର ହେଉଥିବାରୁ ସରକାର ଗରିବ ଲୋକମାନଙ୍କର ଉପକାରପାଇଁ ଅତ୍ୟାବଶ୍ୟକ ଦ୍ରବ୍ୟର ଯୋଗାଣ ବ୍ୟବସ୍ଥାକୁ ଅବ୍ୟାହତ ରଖିବାପାଇଁ ଏବଂ କୌଣସି ଧନୀ, ବ୍ୟବସାୟୀମାନେ ନିରୀହ ଗରିବ ଜନସାଧାରଣଙ୍କୁ ବିଶେଷତଃ ଆଦିବାସୀ ଓ ହରିଜନମାନଙ୍କୁ ଯେପରି ଶୋଷଣ ନ କରନ୍ତି ସେଥିନିମନ୍ତେ ଆହ୍ୱାନ ଜଣାଇଛନ୍ତି । ତେଣୁ ଦେଶର ସାମ୍ପ୍ରତିକ କାର୍ଯ୍ୟକଳାପରୁ ଯାହା ଜଣା ପଡ଼େ କ୍ରମଶଃ ଆମ ଦେଶରୁ ଅର୍ଥନୈତିକ ସମସ୍ୟା ଦୂରୀଭୂତ ହୋଇଯିବ ଏବଂ ନିକଟ ଭବିଷ୍ୟତରେ ଭାରତ ଯେ ପୃଥିବୀର ଅନ୍ୟାନ୍ୟ ପ୍ରଗତିଶୀଳ ଗଣତାନ୍ତ୍ରିକ ରାଷ୍ଟ୍ରମାନଙ୍କ ସହିତ ସମତାଳରେ ଗତି କରିବ, ଏହା ନିଃସନ୍ଦେହରେ କୁହାଯାଇପାରେ । ଗଣତାନ୍ତ୍ରିକ ସମାଜବାଦ ହିଁ ଭାରତର ଲକ୍ଷ୍ୟ । ଭାରତ ସେହି ଲକ୍ଷ୍ୟ ପଥରେ ଦୃଢ଼ପଦ ଆଗେଇ ଚାଲିଛି ।

(ଖୋର୍ଦ୍ଧାଠାରେ କଂଗ୍ରେସ ସେବାଦଳ ଦ୍ୱାରା ସ୍ୱାଧୀନତା ଦିବସ ଉପଲକ୍ଷେ (୧୫-୮-୧୯୭୬) ଅନୁଷ୍ଠିତ ପ୍ରବନ୍ଧ ପ୍ରତିଯୋଗିତାରେ ପୁରସ୍କୃତ ।)






ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଗତ ସେପ୍ଟେମ୍ବର ୨୭ ତାରିଖ ଦିନ ଭୁବନେଶ୍ୱରସ୍ଥ ରାଜଭବନଠାରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ, ମୁଖ୍ୟ ଶାସନ ସଚିବ ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ କର୍ମଚାରୀଙ୍କ ସହିତ ରାଜ୍ୟର ବନ୍ୟା ପରିସ୍ଥିତି ସଂପର୍କରେ ଆଲୋଚନା କରୁଛନ୍ତି ।



ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କୋଣାର୍କର ପ୍ରସିଦ୍ଧ ସୂର୍ଯ୍ୟମନ୍ଦିର ପରିଦର୍ଶନ କରୁଛନ୍ତି ।

## କଳାହାଣ୍ଡି ଜିଲ୍ଲା ନୂଆପଡ଼ା ସବ୍‌ଡିଭିଜନରେ କ୍ଷୁଦ୍ର ଜଳସେଚନ ଯୋଜନାର ଅଗ୍ରଗତି ।



ଡୁମରକୋର କ୍ଷୁଦ୍ର ଜଳସେଚନ ଯୋଜନାର ମାଟିବନ୍ଧ କାମ ଜୋରସୋରରେ ଆଗେଇ ଚାଲିଛି ।



ଖଡ଼ିଆଳ ବ୍ଲକର ରାଣୀମୁଣ୍ଡା କ୍ଷୁଦ୍ର ଜଳସେଚନ ଯୋଜନାର ମୁଖ୍ୟ କେନାଲ୍ ।



ଆରମେଲ୍ଲ କ୍ଷୁଦ୍ର ଜଳସେଚନ ଯୋଜନାର ମାଟିବନ୍ଧ ନିର୍ମାଣ ।



ଭୁଲିଡୋମଦା କ୍ଷୁଦ୍ର ଜଳସେଚନ ଯୋଜନାର ମାଟିବନ୍ଧ କାମ ଆଗେଇ ଚାଲିଛି ।







ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ୧୯୭୫ ଅକ୍ଟୋବର ୨ ତାରିଖ ଦିନ ଢେଙ୍କାନାଳ ଜିଲ୍ଲାର ବଳରାମପୁରଠାରେ ସମନ୍ୱିତ ଗ୍ରାମାଞ୍ଚଳ ଗୃହ ନିର୍ମାଣ ପରିକଳ୍ପନା ଅନୁସାରେ ଏକ ଆଦର୍ଶ ବାସଗୃହ ଉଦ୍‌ଘାଟନ କରୁଛନ୍ତି ।




ଜିଲ୍ଲା ପୁନର୍ଗଠନ କମିଟି ରିପୋର୍ଟର ଏକକପି ନକଲ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ରାଜସ୍ୱ ବିଭାଗ ଶାସନ ସଚିବ ଶ୍ରୀ ସୁଧାଂଶୁ ମୋହନ ପଟ୍ଟନାୟକ ପ୍ରଦାନ କରୁଛନ୍ତି ।





୧୯୭୫ ଅକ୍ଟୋବର ୨ ତାରିଖ ଦିନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ ଢେଙ୍କାନାଳ ଜିଲ୍ଲା କୁରୁମାଟାଙ୍କୁର ଗ୍ରାମର ଜଣେ ଭୂମିହୀନ ବ୍ୟକ୍ତିଙ୍କୁ ଜମି ପଟ୍ଟା ପ୍ରଦାନ କରୁଛନ୍ତି ।



ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ୧୯୭୫ ଅକ୍ଟୋବର ୨ ତାରିଖ ଦିନ ଔଷଧ [illegible] ଉଦ୍‌ଘାଟନ କରୁଛନ୍ତି ।






ନିଖିଳ ଭାରତ ରକ୍ତଦାନ ଦିବସ ଉପଲକ୍ଷେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ନୂଆ ରାଜଧାନୀ ହାସପାତାଳଠାରେ ୧୯୭୫ ଅକ୍ଟୋବର ପହିଲା ଦିନ ରକ୍ତଦାନ କରୁଛନ୍ତି ।



ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ୧୯୭୫ ଅକ୍ଟୋବର ୨ ତାରିଖ ଦିନ ନୂଆ ରାଜଧାନୀସ୍ଥିତ ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ ଉଦ୍‌ଘାଟନ କରୁଛନ୍ତି ।



ସୁନ୍ଦରଗଡ଼ ଜଳସେଚନ କଲୋନୀର ଭିତ୍ତି ସ୍ଥାପନ ଦିବସ ଉପଲକ୍ଷେ ଜଳସେଚନ ବିଭାଗର ଅଧୀକ୍ଷଣ ଯନ୍ତ୍ରୀ ଶ୍ରୀ ଏ. ବି. ଜେନା ଭାଷଣ ଦେଉଛନ୍ତି । ତାଙ୍କ ବାମ ପାର୍ଶ୍ୱରେ ଜଳସେଚନ ଓ ବିଦ୍ୟୁତ୍ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦିବ୍ୟଲୋଚନ ଶେଖର ଦେଓ ଓ ଜିଲ୍ଲାପାଳ ଶ୍ରୀ ପ୍ରସନ୍ନ କୁମାର ମିଶ୍ର ବସିଛନ୍ତି ।

# ଇଞ୍ଜିନିୟରିଂ କାହିଁକି ପଢ଼ିବ

ଶ୍ରୀ ସୁବାସ ଚନ୍ଦ୍ର ଆଚାର୍ଯ୍ୟ

ଥରେ 'ନ୍ୟୁୟର୍କ ଟାଇମସ୍'ରେ ଏକ କାର୍ଟୁନ ପ୍ରକାଶ ପାଇଥିଲା ଯେଉଁଥିରେ କି ଜଣେ ଲୋକ ଏକ ଟୋପି ଧରି ରାସ୍ତାରେ ଦୌଡ଼ୁଥିଲା ଓ ତା' ତଳେ ଲେଖାଥିଲା—

"ମହାଶୟ, କାହିଁକି ଦୌଡ଼ୁଛନ୍ତି ?"

ଉତ୍ତର ଥିଲା—

"ଦେଖନ୍ତୁ, ଆଜି ବଜାରକୁ ଆସିଥିବା ଆଧୁନିକ—ଫେସନର ଏହି ଟୋପିଟି ମୁଁ ମୋ ସ୍ତ୍ରୀଙ୍କ ପାଇଁ କିଣି ନେଉଛି । କିନ୍ତୁ ଭାଳେ ଘରେ ପହଞ୍ଚିବା ପୂର୍ବରୁ ଫେସନଟି ବଦଳି ଯାଇଥିବ, ଏଣୁ ମୁଁ ଦୌଡ଼ି ଦୌଡ଼ି ଶୀଘ୍ର ଘରେ ପହଞ୍ଚିବାକୁ ଚେଷ୍ଟା କରୁଛି ।"

କିନ୍ତୁ ଖାଲି ଯେ ଫେସନଟା ଶୀଘ୍ର ଶୀଘ୍ର ବଦଳୁଛି ତା' ନୁହେଁ, ଏ ଯୁଗର ସବୁ କିଛି, ଯାହା କହନ୍ତି 'ଆଖି ପିଛୁଳାକେ' ବଦଳିବାରେ ଲାଗିଛି । ଦଶବର୍ଷ ତଳେ ଯେଉଁଠି ଘଞ୍ଚ ଅରଣ୍ୟ ଥିଲା, ଯେଉଁଠିକି ଦିନବେଳେ ମଧ୍ୟ ଲୋକ ଯିବାକୁ ଭୟ କରୁଥିଲେ, ଆଜି ସେଠାରେ—ଆକାଶଚୁମ୍ବୀ କୋଠାମାନ ଠିଆ ହୋଇଗଲଣି । ଯେଉଁଠି ଲୋକେ ଗାଁ ଆରପଟର ଖବର ଅବଧି ଜାଣି ପାରୁନଥିଲେ, ଆଜି ସେଠାରେ—ଲୋକମାନେ ଟେଲିଭିଜନ ସାହାଯ୍ୟରେ ହଜାର ହଜାର ମାଇଲ ଦୂର ଦେଶର ଖବର ତ' କେବଳ ଜାଣୁନାହାନ୍ତି—ତା' ସଙ୍ଗେ ସଙ୍ଗେ ସେ ଦେଶର ସହର ବଜାର, ଅଧିବାସୀଙ୍କର ଚାଲିଚଳଣି ତଥା ନାଗରିକବୃନ୍ଦ ମଧ୍ୟ ଦେଖିପାରୁଛନ୍ତି । ଏହାଠାରୁ ଆଶ୍ଚର୍ଯ୍ୟ କଥା କ'ଣ ଅବା ହୋଇପାରେ ? ଏଇ ମାତ୍ର ପନ୍ଦରବର୍ଷ ତଳେ ପୃଥିବୀର ଏକମାତ୍ର ଉପଗ୍ରହ ଚନ୍ଦ୍ର ଭୂପୃଷ୍ଠରେ ସମସ୍ତେ ଅଜ୍ଞ ଥିଲେ, କିନ୍ତୁ ଆଜି—ଲୋକ ସେଠାକୁ ଯାଇ ଫେରିଲେଣି । ଏସବୁ ଦେଖିଲା ପରେ ମନେ ହେଉଛି—ସମସ୍ତେ ନ ବୁଝି ସତେ ଯେପରି ଦୌଡ଼ିବାରେ ଲାଗିଛି । ଯୁଗ ପଛକୁ ସବୁ ବଦଳି ଯାଉଛି । କିନ୍ତୁ ଏହି ଆକାଶଚୁମ୍ବୀ କୋଠା, ଟେଲିଭିଜନ, [illegible], କଳକାରଖାନା, ସୁପରସୋନିକ ବିମାନ, ପରମାଣୁ ବୋମା, କମ୍ପ୍ୟୁଟର ମେସିନ ଆଦି ତାହା ସମ୍ଭବ ହୋଇଛି—ସେ କଥା କେହି ଭାବନ୍ତି ନାହିଁ । ସମସ୍ତେ ମନେ କରନ୍ତି ଯେ, ବୈଜ୍ଞାନିକମାନେ ଏସବୁ ତିଆରି କରି ଦେଉଛନ୍ତି । କିନ୍ତୁ ପ୍ରକୃତପକ୍ଷେ ବୈଜ୍ଞାନିକମାନେ ନିଜ ନିଜର ଜ୍ଞାନ ଓ ଗବେଷଣା ଫଳରେ ନୂତନତତ୍ତ୍ୱ ମାତ୍ର ପ୍ରକାଶ କରନ୍ତି । ସେହି ତତ୍ତ୍ୱକୁ ଭିତ୍ତି କରି ଯେଉଁମାନେ ସେ ସବୁର ବାସ୍ତବ ରୂପରେଖ ଦେଇ ଜନସାଧାରଣଙ୍କ ସମ୍ମୁଖକୁ ଆଣନ୍ତି—ସେମାନେ ହେଲେ ପୃଥିବୀର ହଜାର ହଜାର ଇଞ୍ଜିନିୟର । ଉତ୍ପାଦନ ତଥା ନିର୍ମାଣ କାମରେ ସେମାନଙ୍କର ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । କେବଳ ସେହିମାନଙ୍କର କୁଶଳୀ ହାତର ହସ୍ତକ୍ଷେପରେ ହିଁ ବିଜ୍ଞାନର ଏହି ଅଗ୍ରଗତି ସମ୍ଭବ ହୋଇପାରୁଛି । ଏଣୁ ବର୍ତ୍ତମାନର ଏହି ପରମାଣୁ ଓ ମହାକାଶ ଯୁଗରେ ଇଞ୍ଜିନିୟରମାନଙ୍କର ଗୁରୁତ୍ୱ ଅକଳ୍ପନୀୟ ଭାବରେ ବଢ଼ିଯାଇଛି । ଉଦାହରଣ ସ୍ୱରୂପ—ବର୍ତ୍ତମାନ ପର୍ଯ୍ୟନ୍ତ ଯୁକ୍ତରାଷ୍ଟ୍ର ଆମେରିକାର—ଯେଉଁମାନେ ମହାକାଶଯାତ୍ରୀ ରୂପେ ବଛାଯାଇଛନ୍ତି ଓ ମହାକାଶକୁ ଯାଇଛନ୍ତି, ସେମାନେ 'ସମସ୍ତେ' ଇଞ୍ଜିନିୟର ବା ବୈମାନିକ ବିଜ୍ଞାନରେ ଉଚ୍ଚତର ଡିଗ୍ରୀ ଲାଭ କରିଛନ୍ତି । ଏହା ବ୍ୟତୀତ ମହାକାଶଯାନ ନିର୍ମାଣ ଓ ଉତ୍କ୍ଷେପଣଠାରୁ ଆରମ୍ଭକରି ମହାଶୂନ୍ୟରେ ତା'ର ଗତିପଥ ନିୟନ୍ତ୍ରଣ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଇଞ୍ଜିନିୟରଙ୍କ ଦରକାର ଓ ଆବଶ୍ୟକତା, ତାହା ସେ କେହି ହୃଦୟଙ୍ଗମ କରିପାରିବେ । ଉକ୍ତ କାରଣରୁ ହିଁ, ବୈଜ୍ଞାନିକ ଗୋଷ୍ଠୀ ମଧ୍ୟରେ ଇଞ୍ଜିନିୟରମାନଙ୍କର ସଂଖ୍ୟା ମଧ୍ୟ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି । ଏଥିରୁ ବର୍ତ୍ତମାନ ସମୟରେ ଇଞ୍ଜିନିୟରିଂ ଶିକ୍ଷାର ଗୁରୁତ୍ୱ କେତେ, ତାହା ସହଜେ ଅନୁମେୟ ।

ଯଦିଓ "ଇଞ୍ଜିନିୟରିଂ ବିଦ୍ୟା"ର ସୃଷ୍ଟି ନୂଆ ନୁହେଁ, ତଥାପି ବର୍ତ୍ତମାନ ସମୟରେ ବୁଝାଯାଉଥିବା "ଇଞ୍ଜିନିୟରିଂ ବିଦ୍ୟା"ର ସୃଷ୍ଟି ପ୍ରଥମ ମହାଯୁଦ୍ଧର କାଳରେ । କିନ୍ତୁ ତାହାର ବହୁ ପୂର୍ବରୁ ମିଶରୀୟମାନେ କୋଠାବାଡ଼ି (ପିରାମିଡ଼) ନିର୍ମାଣରେ, ଗ୍ରୀକ୍‌ମାନେ ବନ୍ଦର, ସୁଢ଼ଙ୍ଗ ପଥ ତଥା ସହର ନିର୍ମାଣ ଓ ରୋମୀୟମାନେ ରାସ୍ତାଘାଟ ନିର୍ମାଣରେ ଦକ୍ଷତା ଅର୍ଜନ କରିଥିଲେ । ପ୍ରାୟ ୧୭ଶ ଶତାବ୍ଦୀରେ ମୁଖ୍ୟତଃ ବ୍ୟବହୃତ ହେଉଥିବା ଇଞ୍ଜିନ୍‌ଗୁଡ଼ିକର ତିଆରି ଓ ମରାମତିପାଇଁ କେତେକ ଦକ୍ଷ ଲୋକଙ୍କୁ ରଖାଯିବା ଆବଶ୍ୟକ ହେଲା ଓ ସେମାନଙ୍କୁ ହିଁ ପ୍ରଥମେ କେବଳ 'ଇଞ୍ଜିନିୟର' କୁହାଗଲା । ହେଲେ କ୍ରମଶଃ ସଡ଼କପଥ, ପୋଲ, କେନାଲ, ସୁଢ଼ଙ୍ଗ, ବନ୍ଧ, ବନ୍ଦର ଆଦି ନିର୍ମାଣପାଇଁ ସାମରିକ ଇଞ୍ଜିନିୟରଙ୍କ ବ୍ୟତୀତ ଆଉ କେତେକ ଇଞ୍ଜିନିୟରଙ୍କୁ ରଖାଗଲେ ଓ ଏମାନେ ବେସାମରିକ ହୋଇଥିବାରୁ ଏମାନଙ୍କୁ 'ସିଭିଲ୍ ଇଞ୍ଜିନିୟର' କୁହାଗଲା । ଫ୍ରାନ୍ସରେ ଏହି ଇଞ୍ଜିନିୟରମାନଙ୍କୁ ତାଲିମ୍ ଦେବାପାଇଁ ୧୭୪୭ ମସିହାରେ 'Ecole des ponts et chaussees' (ସଡ଼କ ପଥ ଓ ପୋଲ ନିର୍ମାଣ ପାଇଁ ସ୍କୁଲ) କରାଯାଇଥିଲା । କିନ୍ତୁ ସେତେବେଳର ଅବସ୍ଥା ବର୍ତ୍ତମାନ ଆଉ ନାହିଁ । ସେତେବେଳେ କେବଳ ସାମରିକ ଓ ସିଭିଲ୍ ଇଞ୍ଜିନିୟରିଂ ଥିବା ସ୍ଥଳେ ଆଜି ଇଲେକ୍‌ଟ୍ରିକାଲ, ମେକାନିକାଲ, ମାଇନିଂ, ମେଟାଲର୍ଜିକାଲ୍, ଏରୋନଟିକାଲ, କେମିକାଲ, ଇଣ୍ଡଷ୍ଟ୍ରିଆଲ, ଅଟୋମୋବାଇଲ୍, ଇଲେକ୍‌ଟ୍ରୋନିକ୍ସ, ଟେଲିକମ୍ୟୁନିକେସନ୍, ବାୟୋକେମିକାଲ୍, ନ୍ୟୁକ୍ଲିଅର ଆଦି ବହୁ ଇଞ୍ଜିନିୟରିଂ ବିଭାଗ ଆତ୍ମପ୍ରକାଶ କଲେଣି । ପୁନଶ୍ଚ ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ଗୋଟିଏ ଗୋଟିଏ ଇଞ୍ଜିନିୟରିଂ ବିଭାଗ ବିଭିନ୍ନ ବିଷୟରେ ସ୍ୱତନ୍ତ୍ର ଅଭିଜ୍ଞତାକୁ ନେଇ ପୁଣି ଭାଗ ଭାଗ ହୋଇଯାଉଛି । ଯଥା —ସିଭିଲ୍ ଇଞ୍ଜିନିୟରିଂକୁ ନେଇ ସ୍ୱତନ୍ତ୍ର ଅଭିଜ୍ଞତା ଲାଭ କରି କନଷ୍ଟ୍ରକସନ (Construction) ଇଞ୍ଜିନିୟର, ବ୍ରିଜ (Bridge) ଇଞ୍ଜିନିୟର, ରେଲ୍‌ୱେ (Railway) ଇଞ୍ଜିନିୟର, ମ୍ୟୁନିସିପାଲ (Municipal) ଇଞ୍ଜିନିୟର, ହାଇଡ୍ରୋଲିକ (Hydraulic) ଇଞ୍ଜିନିୟର, ସାନିଟାରି (Sanitary) ଇଞ୍ଜିନିୟର, ହାଇୱେ (Highway) ଇଞ୍ଜିନିୟର, ଓ୍ୱାଟର ସପ୍ଲାଇ (Water Supply) ଇଞ୍ଜିନିୟର, ହାରବର (Harbour) ଇଞ୍ଜିନିୟର, ଷ୍ଟ୍ରକଚରାଲ (Structural) ଇଞ୍ଜିନିୟର ଆଦି ବାହାରି ପଡ଼ୁଛନ୍ତି । ସେହିପରି ମେକାନିକାଲ୍ ଓ ଇଲେକ୍‌ଟ୍ରିକାଲ ଇଞ୍ଜିନିୟରିଂ ବିଭାଗରେ ପାଓ୍ୱାର (Power) ଇଞ୍ଜିନିୟର, ଅର୍ଡନାନ୍ସ (Ordnance) ଇଞ୍ଜିନିୟର, ରେଫ୍ରିଜେରେସନ (Refrigeration) ଇଞ୍ଜିନିୟର, ଇଲୁମିନେସନ (Illumination) ଇଞ୍ଜିନିୟର, ରେଡ଼ିଓ ଇଞ୍ଜିନିୟର, ଇଲେକ୍‌ଟ୍ରୋନିକ୍ସ ଇଞ୍ଜିନିୟର, ଟେଲିଫୋନ ଇଞ୍ଜିନିୟର, ପାଓ୍ୱାର ଟ୍ରାନ୍ସମିସନ (Power Tranmission) ଇଞ୍ଜିନିୟର, ଷ୍ଟିମ ପ୍ଲାଣ୍ଟ (Steam Plant) ଇଞ୍ଜିନିୟରମାନେ ନିଜ ନିଜ ସ୍ଥାନ ଦାବି କରୁଛନ୍ତି । ଏଣୁ ବର୍ତ୍ତମାନ ସମୟରେ ଇଞ୍ଜିନିୟରିଂ ଶିକ୍ଷାର ବ୍ୟାପକତା ସହଜରେ ଅନୁମେୟ । ଏ କ୍ଷେତ୍ରରେ କେତେଗୁଡ଼ିଏ ଇଞ୍ଜିନିୟରିଂ ବିଭାଗର କାର୍ଯ୍ୟ ପଦ୍ଧତିର ସଂପର୍କରେ ସାଧାରଣ ଧାରଣା ରଖାଗଲେ ଅପ୍ରାସଙ୍ଗିକ ହେବନି । ପ୍ରଥମତଃ ଖଣିର ସନ୍ଧାନ, ସେଥିରେ ଥିବା ବସ୍ତୁର ଆବଶ୍ୟକତା, ଖଣିରେ ସଂରକ୍ଷିତ ପରିମାଣ ତଥା ଖଣି ଖୋଳାଗଲେ ତାହା ଆର୍ଥିକ ଦୃଷ୍ଟିରୁ ଲାଭଜନକ ହେବ କି ନାହିଁ; କିପରି ଖୋଳାଯିବ ଆଦି ସର୍ଭେ କରିବା ମାଇନିଂ ଇଞ୍ଜିନିୟରମାନଙ୍କ କାମ । କିନ୍ତୁ ମେଟାଲର୍ଜିକାଲ ଇଞ୍ଜିନିୟରମାନେ କିପରି ଖଣିରୁ ଉତ୍ତୋଳିତ ଧାତୁ ସଂଲଗ୍ନ ପଥରରୁ ପ୍ରକୃତ ଧାତୁର ପୃଥକୀକରଣ ହେବ, ତଥା ଲୋକମାନଙ୍କର ସର୍ବାଧିକ ଆବଶ୍ୟକତା ପୂରଣ କରିପାରିବ, ସେଥି ପ୍ରତି ଦୃଷ୍ଟି ଦିଅନ୍ତି । କେମିକାଲ ଇଞ୍ଜିନିୟରମାନେ ଏହି ଧାତୁରୁ କିପରି ବିଭିନ୍ନ ଆବଶ୍ୟକୀୟ ଜିନିଷ ତିଆରି କରାଯାଇପାରିବ ତାହାର ସୂକ୍ଷ୍ମ ପ୍ରକାଶ କରନ୍ତି ଓ କାରଖାନାରେ ସେହିସବୁ ଜିନିଷ ତିଆରି କଲେ ଆବଶ୍ୟକ ହୁଅନ୍ତି ଇଲେକ୍‌ଟ୍ରିକାଲ ଓ ମେକାନିକାଲ ଇଞ୍ଜିନିୟର । ମେକାନିକାଲ ଇଞ୍ଜିନିୟରମାନେ ବିଭିନ୍ନ ଯନ୍ତ୍ରପାତି ତିଆରି ଓ ରକ୍ଷଣାବେକ୍ଷଣ କରନ୍ତି ଓ ଇଲେକ୍‌ଟ୍ରିକାଲ ଇଞ୍ଜିନିୟରମାନେ ବିଦ୍ୟୁତ ଉତ୍ପାଦନ ତଥା ଯୋଗାଣ କାର୍ଯ୍ୟ ଦେଖନ୍ତି । ଏ ହେଲା କେତେଗୁଡ଼ିଏ ମୁଖ୍ୟ ଇଞ୍ଜିନିୟରିଂ ବିଭାଗର ମୋଟାମୋଟି କାର୍ଯ୍ୟ ।

ଏମାନଙ୍କ ବ୍ୟତୀତ ଆଉ କେତେକ ଇଞ୍ଜିନିୟର ଯୁଦ୍ଧରେ ସୈନ୍ୟମାନଙ୍କୁ ବିଭିନ୍ନ କ୍ଷେତ୍ରରେ ସାହାଯ୍ୟ କରିବାପାଇଁ ନିଯୁକ୍ତ ଥାନ୍ତି । ସେମାନଙ୍କୁ "ସାମରିକ ଇଞ୍ଜିନିୟର" କୁହାଯାଏ । ସବୁଠାରୁ ଦକ୍ଷ ତଥା ପ୍ରତ୍ୟୁତ୍ପନ୍ନମତି ବ୍ୟକ୍ତିଙ୍କର ଆବଶ୍ୟକତା ଏହି ଇଞ୍ଜିନିୟରିଂରେ ବୋଧହୁଏ ସବୁଠାରୁ ଅଧିକ, କାରଣ ଏହାର କାର୍ଯ୍ୟ ପରିସର ବେଶ୍ ବ୍ୟାପକ ଓ ଗୁରୁତ୍ୱପୂର୍ଣ୍ଣ । ପ୍ରଥମେହିଁ ଇଞ୍ଜିନିୟରମାନଙ୍କୁ ସାମରିକ କାର୍ଯ୍ୟରେ ଲଗାଯାଉଥିଲା ଓ 'ଇଞ୍ଜିନିୟର' କହିଲେ ସେମାନଙ୍କୁ କେବଳ ବୁଝାପଡୁଥିଲା । ଯଦିଓ ସେଭଳି ଅବସ୍ଥା ବର୍ତ୍ତମାନ ନାହିଁ, ତଥାପି ସାମରିକ କ୍ଷେତ୍ରରେ ପୂର୍ବପରି ଇଞ୍ଜିନିୟରମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ରହିଆସିଛି ।

ସାମରିକ ଇଞ୍ଜିନିୟରମାନଙ୍କର କାର୍ଯ୍ୟ ମଧ୍ୟରେ ହେଲା—
(୧) ସାମରିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନିର୍ଣ୍ଣୟ (୨) ସଡ଼କ,

ରେଲଲାଇନ, ପୋଲ, ସୁଡ଼ଙ୍ଗ ଆଦି ନିର୍ମାଣ (୩) ସୈନ୍ୟ-ବାହିନୀଙ୍କର ଅଗ୍ରଗତିରେ ଥିବା ବାଧା ଦୂରୀକରଣ (୪) ବିଭିନ୍ନ ଅସୁବିଧାଜନକ ସ୍ଥାନମାନଙ୍କରେ ସୈନ୍ୟବାହିନୀଙ୍କ ପାଇଁ ଜଳଯୋଗାଣ (୫) ବିଭିନ୍ନ ଗୁପ୍ତସ୍ଥାନର ମାନଚିତ୍ର ନିର୍ମାଣ ଓ ବଣ୍ଟନ, ଶେଷରେ (୬) ଯୁଦ୍ଧକ୍ଷେତ୍ରରେ ଆବଶ୍ୟକ ହେଉଥିବା ଇଞ୍ଜିନିୟରିଂ ଉପକରଣ ସୈନ୍ୟମାନଙ୍କୁ ଯୋଗାଣ ଆଦି କେତେକ ମୁଖ୍ୟକାର୍ଯ୍ୟ । ବର୍ତ୍ତମାନ ଏଗୁଡ଼ିକ ବିଚାର କରାଯାଉ ।

ପ୍ରଥମତଃ ଯୁଦ୍ଧକ୍ଷେତ୍ରରେ ସାମରିକ ଦୃଷ୍ଟିରୁ କେତେଗୁଡ଼ିଏ ସ୍ଥାନର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥାଏ । କାରଣ ଏହି ସ୍ଥାନମାନଙ୍କରେ ରହି ଖୁବ୍ କମ ସୈନ୍ୟ ମଧ୍ୟ ବହୁ ସୈନ୍ୟଙ୍କର ମୁକାବିଲା କରି ପାରନ୍ତି । ଏହି ସ୍ଥାନଗୁଡ଼ିକ ଅଧିକାର କରିନେଲେ, ଶତ୍ରୁପକ୍ଷର ବହୁ ଅଞ୍ଚଳ ହାତକୁ ଚାଲିଆସେ, ଯାହା ଫଳରେ ଆକ୍ରମଣ ସହଜ ହୁଏ ଓ ବହୁ ସମୟରେ ଶତ୍ରୁପକ୍ଷକୁ ପରାଜୟ ସ୍ୱୀକାର କରିବାକୁ ପଡ଼େ । ଏହି ସ୍ଥାନଗୁଡ଼ିକ ଯୁଦ୍ଧର ଅଗ୍ରଗତି ତଥା ବିଭିନ୍ନ ସମୟରେ ବିଭିନ୍ନ ପରିସ୍ଥିତିକୁ ନେଇ ନିରୂପଣ କରାଯାଏ । ଏହି କାର୍ଯ୍ୟ କେତେକାଂଶରେ ସାମରିକ ଇଞ୍ଜିନିୟରମାନଙ୍କୁ ତୁଲେଇବାକୁ ପଡ଼େ ।

ଦ୍ୱିତୀୟରେ ଯୁଦ୍ଧକ୍ଷେତ୍ରରେ ରାସ୍ତା, ରେଲଲାଇନ, ପୋଲ, ସୁଡ଼ଙ୍ଗ ଆଦି ନିର୍ମାଣ ମଧ୍ୟ ସାମରିକ ଇଞ୍ଜିନିୟର-ମାନଙ୍କର ଅନ୍ୟ ଏକ ମୁଖ୍ୟକାର୍ଯ୍ୟ । କିନ୍ତୁ ସାଧାରଣ ସମୟରେ ଏଗୁଡ଼ିକର ନିର୍ମାଣ ଓ ଯୁଦ୍ଧ ସମୟରେ ନିର୍ମାଣ ମଧ୍ୟରେ ଆକାଶ-ପାତାଳ ପ୍ରଭେଦ ଥାଏ । କାରଣ ଗୋଟିଏ ଗୋଟିଏ ପୋଲ ଯୁଦ୍ଧ ନଥିବା ସମୟରେ ବର୍ଷ ବର୍ଷ ସମୟ ଲାଗିଯାଏ । କିନ୍ତୁ ଯୁଦ୍ଧ ସମୟରେ ଏହି ପୋଲ ସାମରିକ ଇଞ୍ଜିନିୟରମାନଙ୍କୁ ପରିସ୍ଥିତିକୁ ଦେଖି ସମସ୍ତ ସମୟରେ ମାତ୍ର ଅଧଘଣ୍ଟାକରୁ ଘଣ୍ଟାକ ମଧ୍ୟରେ ତିଆରି କରିବାକୁ ପଡ଼େ । ଯଦିଓ ଏହି ପୋଲଗୁଡ଼ିକ ଏତେ ଶକ୍ତ ହୁଏ ଟାଙ୍କଠାରୁ ଆରମ୍ଭକରି ସାମରିକ ବିଭାଗର ବହୁ ଓଜନଦାର ଗାଡ଼ି ଏହା ଉପରେ ଦେଇ ଯିବା ଆସିବା କଲେ ମଧ୍ୟ, କୌଣସି କ୍ଷତି ହୁଏ ନାହିଁ । କାରଣ ତା' ନ ହେଲେ ସୈନ୍ୟମାନେ ଆଗେଇ ପାରନ୍ତି ନାହିଁ ଓ ଶତ୍ରୁପକ୍ଷର ମୁକାବିଲା କରି ନ ପାରି ପରାସ୍ତ ହୁଅନ୍ତି । ତେଣୁ ଅନେକ ସମୟରେ ପୂର୍ବରୁ ତିଆରି ସ୍ପାନମାନ ପୋଲ ଜଳପୂର୍ଣ୍ଣ ନଦୀଉପରେ ଖଞ୍ଜିଦେବାକୁ ପଡ଼େ । କିନ୍ତୁ ସବୁ ସମୟରେ ଏହା ସମ୍ଭବ ହୁଏ—ଯେ କଥା ନୁହେଁ । କାରଣ ଅନେକ ସମୟରେ ଦେଖିବାକୁ ମିଳେ—ଶହ ଶହ ଫୁଟ ଗଭୀର ଗହ୍ୱର । ତଳକୁ ଚାହିଁଲେ ଡର ଲାଗେ । କାଶ୍ମୀର ଅଞ୍ଚଳର ଘାଟୀଗୁଡ଼ିକ ଯେଉଁମାନେ ଦେଖିଥିବେ, ସେମାନେ ସହଜରେ କଳ୍ପନା କରିପାରିବେ । ସେ କ୍ଷେତ୍ରରେ ଇଞ୍ଜିନିୟର-ମାନଙ୍କୁ ନିଜ ବୁଦ୍ଧି ବଳ ପ୍ରୟୋଗ କରି ତା' ଉପରେ ପୋଲ ନିର୍ମାଣ କରିବାକୁ ହୁଏ । ଏହିଠାରେ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ୧୯୭୧ ଭାରତ-ପାକିସ୍ଥାନ ଯୁଦ୍ଧବେଳେ ଯେତେବେଳେ ଭାରତୀୟ ସୈନ୍ୟମାନେ ପୂର୍ବବଙ୍ଗରେ ଅଗ୍ରସର ହୋଇ ସେ ସମୟର ପୂର୍ବ ପାକିସ୍ଥାନ ଭିତରକୁ ମାଡ଼ିଯାଉଥିଲେ, ସେତେବେଳେ ପାକିସ୍ଥାନୀ ସୈନ୍ୟମାନେ ଭାରତୀୟ ସୈନ୍ୟମାନଙ୍କ ଅଗ୍ରଗତିରେ ବାଧା ଦେବାପାଇଁ ଅନେକଗୁଡ଼ିଏ ପୋଲ ନିଜେ ଭାଙ୍ଗି ଦେଇଥିଲେ । କିନ୍ତୁ ସେତେବେଳେ ଭାରତୀୟ ଇଞ୍ଜିନିୟରମାନେ ଏତେ ଶୀଘ୍ର ଶୀଘ୍ର ପୁଣି ପୋଲ ନିର୍ମାଣ କରିଦେଉଥିଲେ ଯେ, ଭାରତୀୟ ସୈନ୍ୟଙ୍କ ଅଗ୍ରଗତିରେ କୌଣସି ବାଧା ସୃଷ୍ଟି ହୋଇ ନ ଥିଲା ଓ ସେତେବେଳେ ଭାରତୀୟ ଇଞ୍ଜିନିୟରମାନଙ୍କର ଏହି ଦକ୍ଷତା ଦେଖି ଅନ୍ୟ ଦେଶର ଇଞ୍ଜିନିୟରମାନେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଉଲ୍ଲେଖନୀୟ ଯେ, ଯୁଦ୍ଧପରେ ଏହିଭଳି କେତେକ ପୋଲ ଭାରତୀୟ ଇଞ୍ଜିନିୟରମାନେ ହଟାଇ ନ ଆଣି ବଙ୍ଗଳାଦେଶ ଲୋକଙ୍କର ସୁବିଧାପାଇଁ ଛାଡ଼ିଦେଇ ଆସିଥିଲେ । ତାହାର କେତେକ ଫଟୋଚିତ୍ର ସେ ସମୟର ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । ଏ ସବୁ ବ୍ୟତୀତ ସୈନ୍ୟମାନଙ୍କ ଅଗ୍ରଗତି ପାଇଁ (Advance Movement) ଇଞ୍ଜିନିୟରମାନଙ୍କୁ ପାହାଡ଼ ଫଟାଇ ସୁଡ଼ଙ୍ଗ ଓ ଦୁର୍ଗମ ଅରଣ୍ୟ ଅଞ୍ଚଳରେ ସୈନ୍ୟମାନଙ୍କପାଇଁ ଖାଦ୍ୟସାମଗ୍ରୀଠାରୁ ଆରମ୍ଭ କରି ଅସ୍ତ୍ରଶସ୍ତ୍ର ବୋହି ନେବା ନିମିତ୍ତ ରାସ୍ତା ଓ ରେଲ୍‌ଲାଇନ ନିର୍ମାଣ କରିବାକୁ ହୁଏ । କାରଣ ହଜାର ହଜାର ସୈନ୍ୟଙ୍କପାଇଁ ବିମାନବାହିକା ଜାହାଜରେ ସବୁ ସମୟରେ ସବୁଜିନିଷ ଯୋଗାଇବା ସମ୍ଭବ ହୁଏ ନାହିଁ—ପୁଣି ନିରାପଦ ମଧ୍ୟ ନୁହେଁ । ଯୁଦ୍ଧ ସମୟରେ ସମୟର ମୂଲ୍ୟ ଦୃଷ୍ଟିରୁ ଇଞ୍ଜିନିୟରମାନଙ୍କୁ ଏ କାର୍ଯ୍ୟଗୁଡ଼ିକ ଖୁବ୍ କମ୍ ସମୟରେ କରିବାକୁ ପଡ଼ିଥାଏ ।

ଯଦିଓ ଯୁଦ୍ଧ ସମୟରେ ସୈନ୍ୟମାନଙ୍କର ଅଗ୍ରଗତିକୁ ବାଧାଦେବାପାଇଁ ଶତ୍ରୁସୈନ୍ୟମାନେ ଆପ୍ରାଣ ଚେଷ୍ଟା କରନ୍ତି । ବହୁ ସମୟରେ ବହୁ ପୋଲ, ରାସ୍ତା, ବିଭିନ୍ନ ବିସ୍ଫୋରକ ଦ୍ରବ୍ୟ ସାହାଯ୍ୟରେ ଉଡ଼େଇ ଦିଅନ୍ତି—ନଦୀକୂଳଥିବା ଜାଗାମାନଙ୍କରେ ବିଭିନ୍ନ ପ୍ରକାର ବନ୍ଧା ବସେଇ ଦିଅନ୍ତି—ଏମିତି ସମୟରେ ଆବଶ୍ୟକ ହେଲେ ମାଇନ୍ ମଧ୍ୟ ବିଛେଇ ଦିଅନ୍ତି । ଫଳରେ ସୈନ୍ୟମାନେ ଅଗ୍ରଗତିବେଳେ ବହୁ ଅସୁବିଧାର ସମ୍ମୁଖୀନ ହୁଅନ୍ତି । ବହୁ ସମୟ ମଧ୍ୟ ନଷ୍ଟ ହୁଏ ଓ ସେହି ସମୟ ମଧ୍ୟରେ ଶତ୍ରୁସୈନ୍ୟମାନେ ନିରାପଦ ସ୍ଥାନକୁ ଚାଲିଯାଇ ନିଜକୁ ଲୁଚେଇ ଦିଅନ୍ତି ଏଣେ ମାଇନ୍ ବିଛା ହୋଇଥିବା ଅଞ୍ଚଳ ଉପରେ ଦେଇ ଟାଙ୍କ

କିମ୍ବା ଔଜନଦାର ଗାଡ଼ି ଏପରିକି ସୈନ୍ୟମାନେ ବୁଲିଗଲେ ମଧ୍ୟ ବିସ୍ଫୋରଣ ଘଟେ ! ଯାହାଫଳରେ ବହୁ ସୈନ୍ୟ ମରନ୍ତି ଓ ଅସ୍ତ୍ରଶସ୍ତ୍ର ଧ୍ୱଂସ ପାଇଯାଏ । ଏଣୁ ଏହି ମାଇନଗୁଡ଼ିକ ଖୋଳି ତାହାର ନିଷ୍କ୍ରିୟ କରିଦେବାପାଇଁ ଇଞ୍ଜିନିୟରମାନେ ଆବଶ୍ୟକ ହୁଅନ୍ତି । ପାଦେ ପାଦେ ଅତେଇ ନିଜ ଜୀବନକୁ ବିପନ୍ନ କରି ସେମାନେ ଏହି ମାଇନ୍‌ଗୁଡ଼ିକ କାଢ଼ି ସୈନ୍ୟ-ମାନଙ୍କ ପାଇଁ ଆଗେଇଯିବାର ବାଟ ଖୋଲି ଦିଅନ୍ତି । ପୂର୍ବରୁ ଏହି ମାଇନ୍‌ଗୁଡ଼ିକ ଚୁମ୍ବକୀୟ ଧାତୁରେ ନିର୍ମିତ ହେଉଥିବାରୁ ତାହା କାଢ଼ିବା ସହଜ ହେଉଥିଲା । କିନ୍ତୁ ଏବେ ପ୍ଲାଷ୍ଟିକର ମାଇନ୍ ଗଢ଼ି ହୋଇଯାଉଛି—ଯାହାଫଳରେ ମାଇନ୍ ପଥ ପରିଷ୍କାର କରିବାପାଇଁ ଇଞ୍ଜିନିୟରମାନଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ୁଛି । ଠିକ୍ ସେହିପରି ଯେଉଁସବୁ କାମ ସୈନ୍ୟମାନେ ଅଗେଇଲାବେଳେ (Advance Movement) ଇଞ୍ଜିନିୟରମାନଙ୍କୁ କରିବାକୁ ପଡ଼େ—ସୈନ୍ୟମାନେ କୌଣସି କାରଣରୁ ପଛଘୁଞ୍ଚା ଦେଇ ପଳାଇଆସିଲାବେଳେ ସେମାନଙ୍କୁ ତାହାର ଅନୁପୂରକ କାର୍ଯ୍ୟଗୁଡ଼ିକ କରିବାକୁ ପଡ଼େ । ଯଥା—ପୋଲ, ରେଳ ରାସ୍ତା ଭାଙ୍ଗି ଦେବାକୁ ପଡ଼େ, ରାସ୍ତାରେ କଣ୍ଟା ଖଞ୍ଜି ଦେବାକୁ ପଡେ—ମାଇନ୍ ବିଛେଇ ଦେବାକୁ ମଧ୍ୟ ହୁଏ ଏବଂ ଶେଷରେ ମାନଚିତ୍ର ସାହାଯ୍ୟରେ ମାଇନ୍ ବିଛିବା ସ୍ଥାନଗୁଡ଼ିକ ଚିହ୍ନଟ କରିବାକୁ ପଡ଼େ, କାରଣ ଦରକାର ପଡ଼ିଲେ ପୁଣି ସେହି ଇଞ୍ଜିନିୟରମାନଙ୍କୁ ନିଜ ସୈନ୍ୟଙ୍କ ଅଗେଇବାପାଇଁ ନିଜେ ପୋତିଥିବା ମାଇନଗୁଡ଼ିକ ଖୋଳି ଦେବାକୁ ପଡିଥାଏ । ଏହିଠାରେ ମନେ ରଖିବାକୁ ହେବ ଯେ, ପଛଘୁଞ୍ଚାବେଳେ ସବୁ ସମୟରେ ପୋଲ ବା ରେଳରାସ୍ତା ଭାଙ୍ଗି ଦେବାକୁ ପଡ଼େ ନାହିଁ କାରଣ ସୈନ୍ୟମାନେ ଅଗେଇଲାବେଳେ ନିର୍ମିତ ବହୁ ପୋଲ ଇଞ୍ଜିନିୟରମାନଙ୍କୁ ପୁଣି ଭାଙ୍ଗି (Fold) କରି ଧରି ଆସିବାକୁ ହୁଏ । କିନ୍ତୁ ହାତରେ ସମୟ କମ୍ ଥିଲେ ବାଧ୍ୟ ହୋଇ ଇଞ୍ଜିନିୟରମାନେ ଏଗୁଡ଼ିକ ବିସ୍ଫୋରକ ଦ୍ରବ୍ୟଦ୍ୱାରା ଉଡ଼େଇ ଦିଅନ୍ତି ।

ଇଞ୍ଜିନିୟରମାନଙ୍କର ଅନ୍ୟ ଗୋଟିଏ ମୁଖ୍ୟ କାର୍ଯ୍ୟ ହେଉଛି, ସୈନ୍ୟମାନଙ୍କୁ ଜଳଯୋଗାଣ । ହଜାର ହଜାର ସୈନ୍ୟଙ୍କୁ ଯୁଦ୍ଧ କ୍ଷେତ୍ରରେ ଖାଦ୍ୟଶସ୍ୟ ଯୋଗାଇଦେବା ସମ୍ଭବପର ହୁଏ କିନ୍ତୁ ଅନେକ ସମୟରେ ପିଇବାପାଣି ଯୋଗାଇବା ସମ୍ଭବପର ହୁଏ ନାହିଁ । ସୈନ୍ୟମାନେ ମୁକ୍ତପରେ ବିଜନ ସ୍ଥାନମାନଙ୍କରେ ଅନିର୍ଦ୍ଦିଷ୍ଟକାଳ ପର୍ଯ୍ୟନ୍ତ କ୍ୟାମ୍ପ ପକାଇ ରହନ୍ତି । ସେ ସମୟରେ ସୈନ୍ୟମାନଙ୍କୁ ଜଳଯୋଗାଣ ବ୍ୟବସ୍ଥାସାପେକ୍ଷ ହୁଏ । ଏଣୁ ସେହି ସ୍ଥାନ-ମାନଙ୍କରେ ଥିବା ଅବ୍ୟବହୃତ ଜଳଭଣ୍ଡାର କିମ୍ବା ଗାଡ଼ିଆର ଦୂଷିତ ଜଳକୁ ଇଞ୍ଜିନିୟରମାନେ ଯନ୍ତ୍ର ସାହାଯ୍ୟରେ ଆଣି ବିଶୁଦ୍ଧକରି ସୈନ୍ୟମାନଙ୍କୁ ଯୋଗାଇ ଦିଅନ୍ତି । ଏହା ସହଜ କାମ ବୋଲି ଜଣାଗଲେ ମଧ୍ୟ ଅତ୍ୟନ୍ତ ଦୁଃସାଧ୍ୟ ।

ଏ ସବୁ ବ୍ୟତୀତ ଶତ୍ରୁ ପକ୍ଷର ତଥା ନିଜ ଦେଶର ସାମରିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକ ସର୍ଭେ କରି ମାନଚିତ୍ର ନିର୍ମାଣ, ଯୁଦ୍ଧ କ୍ଷେତ୍ରରେ ସୈନ୍ୟମାନଙ୍କୁ ବିଭିନ୍ନ ଇଞ୍ଜିନିୟରିଂ ଜିନିଷପତ୍ର ଯୋଗାଣ ତଥା ମିଲିଟାରୀ ବିମାନ-ଘାଟୀ ନିର୍ମାଣ ଆଦି ସାମରିକ ଇଞ୍ଜିନିୟରମାନଙ୍କର କାର୍ଯ୍ୟ ପରିସରର ଅନ୍ତର୍ଭୁକ୍ତ । ଅତୀତରେ ପୃଥିବୀର ବିଭିନ୍ନ ଯୁଦ୍ଧରେ ସାମରିକ ଇଞ୍ଜିନିୟରମାନେ ଯେଉଁ ଅପୂର୍ବ କୌଶଳ ପ୍ରଦର୍ଶନ କରି ନିଜ ନିଜର ସୈନ୍ୟମାନଙ୍କୁ ରକ୍ଷା କରିଛନ୍ତି, ତାର ବହୁ ସ୍ମରଣୀୟ ଘଟଣା ଏବେ ମଧ୍ୟ ଇତିହାସ ପୃଷ୍ଠାରେ ଲେଖା ହୋଇରହିଛି ।

ବର୍ତ୍ତମାନ ଭାରତରେ ଇଞ୍ଜିନିୟରିଂ ଶିକ୍ଷାର ଅଗ୍ରଗତି ଓ ଆବଶ୍ୟକତା ସଂପର୍କରେ ଆଲୋଚନା କରାଯାଉ । ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ଭାରତର ବୈଜ୍ଞାନିକମାନେ ମଧ୍ୟ ପାଶ୍ଚାତ୍ୟ ଦେଶର ବୈଜ୍ଞାନିକମାନଙ୍କ ସଙ୍ଗେ ତାଳ ଦେଇ ଅଗେଇ ଚାଲିଛନ୍ତି । ଗତବର୍ଷ ଜୁନ ମାସରେ ରାଜସ୍ଥାନର ମରୁଭୂମିରେ ଆଣବିକ ବିସ୍ଫୋରଣ ପରେ, ଏ ବର୍ଷ ମେ ମାସରେ ଭାରତର "ଆର୍ଯ୍ୟଭଟ୍ଟ" ଉପଗ୍ରହ ପ୍ରେରଣ ଭାରତକୁ ବହୁ ଗୌରବର ଅଧିକାରୀ କରାଇଛି । ପୁନଶ୍ଚ ଏ ବର୍ଷ ଅଗଷ୍ଟ ମାସ ପ୍ରାରମ୍ଭରୁ ଟେଲିଭିଜନ ଦେଖିବାର ସୁଯୋଗ ଲାଭ କରିଛନ୍ତି, ଏ ସବୁ ଭାରତର ବିଜ୍ଞାନର ଅଗ୍ରଗତି ପଥରେ ଗୋଟିଏ ଗୋଟିଏ ବିରାଟ ସୋପାନ ।

କିନ୍ତୁ ଦୁଃଖର କଥା ଯେ, ଅନେକ ଏହାକୁ ବିରୋଧ କରୁଛନ୍ତି । ସେମାନେ ମନେ କରୁଛନ୍ତି ଯେ, ଭାରତ ଦାରିଦ୍ର୍ୟରେ ସଢ଼ୁଥିଲାବେଳେ କୋଟି କୋଟି ଟଙ୍କା ବିଜ୍ଞାନସ୍ତରରେ ଏପରି ଆଡ଼ମ୍ବର କରିବା ଉଚିତ୍ ନୁହେଁ । କିନ୍ତୁ ସେମାନେ ଜାଣି ରଖିବା ଉଚିତ୍ ଯେ, ଏହା 'ଆଡ଼ମ୍ବର' ନୁହେଁ, ଅନ୍ୟ ପକ୍ଷରେ ଭାରତରେ ଥିବା ବହୁ ଜନଗଣଙ୍କର ଦାରିଦ୍ର୍ୟ ମୋଚନପାଇଁ ଏକ ସୁଚିନ୍ତିତ ଯୋଜନା । ସେହି ଟଙ୍କା ବିଜ୍ଞାନସ୍ତରେ କେତୋଟି ବଡ଼ ନିର୍ମାଣ କିମ୍ବା କାରଖାନା କରାଯାଇଥିଲେ, ହୁଏତ ସାମାନ୍ୟ କେତେ ହଜାର ଲୋକ ଉପକୃତ ହୋଇଥାନ୍ତେ । ମାତ୍ର ବର୍ତ୍ତମାନର ଏହି ଉପଗ୍ରହ ପ୍ରେରଣ ଓ ଆଣବିକ ବିସ୍ଫୋରଣ କାର୍ଯ୍ୟକ୍ରମ ଆଉ ୨।୩ ବର୍ଷ ପରେ ଦେଶର ସବୁ ଲୋକଙ୍କପାଇଁ ଉନ୍ନତର ବାଟ ଖୋଲିଦେବ । ଉଦାହରଣ ସ୍ୱରୂପ ଏହି ଉପଗ୍ରହ କାର୍ଯ୍ୟକ୍ରମ ସଫଳ ହେଲେ, ଦେଶର ସାରା ବର୍ଷର ପାଣିପାଗ ବିଷୟରେ ବହୁ ଆଗରୁ କଳନା କରାଯାଇପାରିବ, ଯାହା ଫଳରେ ଭାରତ ପରି

କୃଷି ପ୍ରଧାନ ଦେଶରେ କୋଟି କୋଟି କୃଷକ ଉପକୃତ ହେବେ । ଦ୍ୱିତୀୟରେ ୧୯୬୮ ମସିହା ବେଳକୁ ଶ୍ରୀହରିକୋଟା (ଆନ୍ଧ୍ର ପ୍ରଦେଶ)ରୁ ଉପଗ୍ରହ ସାହାଯ୍ୟରେ ଟେଲିଭିଜନ କାର୍ଯ୍ୟକ୍ରମ ଆରମ୍ଭ କରାଯାଇ ପାରିବ । ସେହିପରି ରାଜସ୍ଥାନରେ ଯେଉଁ ଆଣବିକ ବିସ୍ଫୋରଣ କରାଗଲା ତାର ଅଭିଜ୍ଞ ପରୀକ୍ଷାଲବ୍ଧ ଜ୍ଞାନକୁ ନେଇ ପରମାଣୁରୁ ବିଦ୍ୟୁତଶକ୍ତି ଉତ୍ପାଦନ କରାଯିବାର କଳ୍ପନା ଅଛି । ଏହା ସଫଳ ହେଲେ, ଭାରତରେ ଆଉ ବିଦ୍ୟୁତ ଶକ୍ତି ସଂକଟ ଦେଖାଯିବ ନାହିଁ । ଏହି ସବୁ ଦୃଷ୍ଟିରୁ ଦେଖିବାକୁ ଗଲେ, ଭାରତର ଏହି କାର୍ଯ୍ୟକ୍ରମଗୁଡ଼ିକ ଯୁଗୋପଯୋଗୀ ହୋଇଛି । ବର୍ତ୍ତମାନ ଏହି କାର୍ଯ୍ୟକ୍ରମକୁ ଆଗେଇ ନେବା ଭାର ଭାରତର ଯୁବ ବୈଜ୍ଞାନିକ ତଥା ଯୁବ ଇଞ୍ଜିନିୟରମାନଙ୍କ ଉପରେ ପଡ଼ିଛି । ଏଣୁ କେବଳ ପାଶ୍ଚାତ୍ୟ ଦେଶରେ ନୁହେଁ—ଭାରତରେ ମଧ୍ୟ ଇଞ୍ଜିନିୟରିଂ ଶିକ୍ଷାର ଆବଶ୍ୟକତା ଖୁବ୍ ବଢ଼ିଯାଇଛି । ତାହାଫଳରେ ସ୍ୱାଧୀନତା ପରେ ବିଶେଷକରି ବିଗତ ଦଶନ୍ଧି ମଧ୍ୟରେ ଆମ ଦେଶରେ ବୈଷୟିକ ଶିକ୍ଷା କ୍ଷେତ୍ରରେ ଅଭୂତପୂର୍ବ ଉନ୍ନତି ହାସଲ ହୋଇ ପାରିଛି । ସ୍ୱାଧୀନତାର ପ୍ରାକ୍ କାଳରେ ସାରା ଦେଶରେ ମାତ୍ର ୩,୦୦୦ ଛାତ୍ର ଅଧ୍ୟୟନ କରିପାରିବା ଭଳି ୩୮ଟି ଇଞ୍ଜିନିୟରିଂ ଓ ଟେକ୍‌ନୋଲୋଜି ଶିକ୍ଷାନୁଷ୍ଠାନ ଥିବାବେଳେ ବର୍ତ୍ତମାନ ଏ ଧରଣର ଶିକ୍ଷାନୁଷ୍ଠାନର ସଂଖ୍ୟା ୧୩୭କୁ ବୃଦ୍ଧି ପାଇଛି ଓ ପ୍ରତିବର୍ଷ ୨୧,୩୦୦ରୁ ଊର୍ଦ୍ଧ୍ୱ ଛାତ୍ର ଏ ସମସ୍ତ ଅନୁଷ୍ଠାନରେ ପ୍ରବେଶ କରୁଛନ୍ତି । ଏହା ଭାରତ ପକ୍ଷେ କମ୍ ଗୌରବର କଥା ନୁହେଁ ।

———

## ଆଦିବାସୀ ପରାମର୍ଶଦାତା ପରିଷଦ ବୈଠକ

ରାଜ୍ୟ ସଚିବାଳୟଠାରେ ଆଦିବାସୀ ପରାମର୍ଶଦାତା ପରିଷଦର ଏକ ବୈଠକ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ୧୯୬୭ ମସିହା ମହାଜନୀ ନିୟମାବଳୀ (ଉପଜାତି ଅଞ୍ଚଳ)କୁ ଅଧିକ ପ୍ରଗତିଶୀଳ ଓ ଫଳପ୍ରଦ କରିବାପାଇଁ ବୈଠକରେ କେତେକ ସଂଶୋଧନ ପ୍ରସ୍ତାବ ଆଲୋଚିତ ହୋଇଥିଲା । ସେଗୁଡ଼ିକ ହେଲା:—

ସଂଶୋଧିତ ନିୟମାବଳୀ ଲାଗୁହେବା ଦିନଠାରୁ କଚେରୀରେ ଋଣ ଗ୍ରହୀତାମାନଙ୍କ ଉପରେ ଧାର୍ଯ୍ୟ ହୋଇଥିବା ଡିକ୍ରୀ ଆଦେଶ ୨ବର୍ଷ ପର୍ଯ୍ୟନ୍ତ ସ୍ଥଗିତ ରହିବ, ଋଣ ଗ୍ରହୀତାଙ୍କ ଦ୍ୱାରା ମହାଜନଙ୍କ ନାମରେ ସଂପାଦିତ ହୋଇଥିବା ବନ୍ଧକ ସାତବର୍ଷ ପୂର୍ତ୍ତି ହୋଇଥିଲେ ରଦ୍ଦ ହୋଇଯିବ, ମହାଜନମାନେ ଖାତକଙ୍କଠାରୁ କୌଣସି କ୍ଷେତ୍ରରେ ମୂଳଧନଠାରୁ ଅଧିକ ସୁଧ ନେଇ ପାରିବେ ନାହିଁ ।

ଏହା ବ୍ୟତୀତ ଅବକାରୀ ନୀତି, ଓଡ଼ିଶା ରାଜ୍ୟ ଆଦିବାସୀ ଉନ୍ନୟନ ସମବାୟ ନିଗମ, ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ କେନ୍ଦ୍ର ଓ ସ୍ୱାସ୍ଥ୍ୟ ସହାୟକ କେନ୍ଦ୍ରର କାର୍ଯ୍ୟକାରିତା ସଂପର୍କରେ ଆଲୋଚନା କରାଯାଇଥିଲା ।

ଅନ୍ୟାନ୍ୟମାନଙ୍କ ମଧ୍ୟରେ ଆଦିବାସୀ ଓ ଗ୍ରାମମଙ୍ଗଳ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ରାମଚନ୍ଦ୍ର ଉଲ୍ଲକା, ବିଦ୍ୟୁତ ଓ ସେଚ ଉପମନ୍ତ୍ରୀ ଶ୍ରୀ କୁଆଁରିଆ ମାଝି, ମୁଖ୍ୟ ଶାସନ ସଚିବ ଶ୍ରୀ ଭି. ଏମ୍. ମାଥ୍ୟୁ, ରାଜସ୍ୱ ବୋର୍ଡର କମିଶନର ଶ୍ରୀ ସୁଧାଂଶୁ ମୋହନ ପଟ୍ଟନାୟକ ଓ ଅନ୍ୟ ପରାମର୍ଶଦାତା ଏହି ବୈଠକରେ ଯୋଗ ଦେଇଥିଲେ ।

# ଗଣେଶଙ୍କୁ ଉପହାର



ଶ୍ରୀମତୀ ନିରୁପମା ଆଚାର୍ଯ୍ୟ

" ଆମ କ୍ଲବ୍‌ର ଗଣେଶ ପୂଜା ଯେମିତି ସବୁଠାରୁ ଭଲ ହେବ ସେଥିପାଇଁ ଆଜଠାରୁ ଲଗି ପଡ଼ିବାକୁ ହେବ । ଚାନ୍ଦା ଆଦାୟ କରିବା, ମୂର୍ତ୍ତି କିଣା, ପୂଜା ସରଞ୍ଜାମ ଯୋଗାଡ଼ ଆମର, କିନ୍ତୁ ତୁମେ ସବୁ ଯେତେ କୁନ କୁନ ମେମ୍ବର ଆମ କ୍ଲବ୍‌ର, ସମସ୍ତଙ୍କର କାମ କଅଣ ?" ସୁରେଶ ସେ ଦିନ ପୂଜା ପ୍ରସ୍ତୁତି ଲାଗି ଡକା ହୋଇଥିବା ଜରୁରୀ ବୈଠକରେ ଯୋଗ ଦେଇଥିବା ବାରରୁ ଚଉଦ ବର୍ଷର ପିଲାଙ୍କ ଆଡ଼କୁ ଦୃଷ୍ଟି ପକାଇଲେ । ଏମାନଙ୍କୁ ମେମ୍ବରଭୁକ୍ତ କରାଯାଇଛି କେବଳ ମାସକୁ ମାସ କିଛି ଚାନ୍ଦା ଆଦାୟ ହେବ ବୋଲି । ଅଥଚ ସେମାନେ ମଧ୍ୟ ବିଶେଷ କିଛି ଅସୁବିଧା ସୃଷ୍ଟି କରନ୍ତି ନାହିଁ ଯଦି ତୁମେ ତାଙ୍କୁ କିଛି ଦାୟିତ୍ୱ ଦେଇ ବିଶ୍ୱାସ କରୁଥିବ, ବରଂ ତୁମକୁ ସମ୍ମାନ କରିବେ ପ୍ରଚୁର ।



ପିଲାଏ, ଏ ତା ମୁହଁକୁ ସେ ତା ମୁହଁକୁ ଚାହାଁଚାହିଁ ହେଲେ । ତା'ପରେ ଗୁଣୁଗୁଣୁ ଶୁଭିଲା । ହୁଁ, ସେମାନେ ଚାନ୍ଦା ଅଦାୟ କରିବେ ଆମକୁ ନେବେନି । ଏତେ ପିଲା ଗଲେ ଗୋଳମାଳ ହେବ, ଲୋକେ ବିରକ୍ତ ହେବେ ! ମୂର୍ତ୍ତି କିଣିଲେ—ଆମନ୍ତେ ଯାଇ କଅଣ କରିବ ! ଦି'ଜଣ ତ ଯାଇ ମୂର୍ତ୍ତି କିଣି ଗାଡ଼ିରେ ଧରି ଚାଲି ଆସିବେ ! ଫଳାହାର କରିବାକୁ ଗଲେ ତ କହିବେ—ଏତେ ଲୋକ ଏ ଘରେ ପଶିଲେ ତ ଦାନ୍ଧ ଦର୍ଶନ ଅବୁ ନେବା ଦାଲି ଦାତବ ଲାଗିବ କେଉଁଠି ? ମିଛରେ ଧକ୍କା ମଚାମଚି ହୋଇ ଗଣେଶଙ୍କ ଯୋଡ଼ିଟି ଯିବ । କିଛି କରିବାକୁ ତ ଆମ ହାତକୁ ପଇସା ଦେବେନି, ଦୋକାନ କ୍ରୁଅଡ଼େ ଆମକୁ ଠକି ଦବ ।

ଆମେ ତା'ହେଲେ ଆଉ କଅଣ କରିବୁ ? ଖାଲି ଚାନ୍ଦା ଦେବୁ
(ତେବେ ବି ବୋଉ ଟଙ୍କା ଦେଲାବେଳକୁ ଗାଳି ଦଉଥିବ)
ଆଉ ଏଇ କ୍ଲବ୍ ଘର ସୁନ୍ଦରପଣ ଉଣ୍ଡି ମାରିବୁ ?

ଏ ଯୁକ୍ତିଯୁକ୍ତିର ପ୍ରତ୍ୟେକଟି କଥା ପରସ୍ପରଙ୍କରେ ସୁରେଶର କାନରେ ନ ବାଜିଲେ ବି ମନରେ ଠିକ୍ ବାଜିଲା । ସେ ପୁଣି ଥରେ ତା ସମ୍ମୁଖକୁ ଦୋହରେଇଲା, "—ତରେ କଅଣ ତୁମମାନଙ୍କ କାମ, ଠିକ୍ କଲ ?" ଆଉ ଅଧିକା କିଛି କାମ ପିଲାଙ୍କ ମୁଣ୍ଡକୁ ଶୁଝିଲା ନାହିଁ । ସେମାନେ ସୁରେଶର ଆଦେଶକୁ ଅପେକ୍ଷା କରି ରହିଲେ । ସୁରେଶ ପୁଣି ମୁହଁ ଖୋଲିଲା—"ଆମେ ସିନା ମାଟିର ମୂର୍ତ୍ତି କିଣି ଆଣିବୁ, ହେଲେ ତୁମେ ତାଙ୍କୁ ଜୀବନ୍ତ କରିବ, ତୁମେଇ ତାଙ୍କୁ ହସେଇବ ।"

ପିଲାଙ୍କ ଭିତରେ ପୁଣି ନିଜ ପ୍ରତି ସମ୍ମାନବୋଧ ଫେରି ଆସିଲା । ସେମାନେ ତେବେ ଠାକୁରଙ୍କୁ ହସେଇ ପାରିବେ ? ଏହାଠାରୁ ଆଉ ବଡ଼ କଥା କଅଣ ଅଛି ? କିନ୍ତୁ ସେ କାମ କେମିତି ହେବ ? ସୁରେଶର ଧୀରେ ଧୀରେ କଥା କହିବା ଅଭ୍ୟାସ ସେମାନଙ୍କୁ ଅଧୈର୍ଯ୍ୟ କରି ପକାଉଥିଲା ।

ବିପିନ୍, ତେରବର୍ଷର ଅଷ୍ଟମ ଶ୍ରେଣୀର ଛାତ୍ର ଆଉ ସମ୍ଭାଳି ପାରିଲାନି । ତା' ଜାଗାରୁ ଉଠିଯାଇ ସୁରେଶକୁ ହଲେଇ ଦେଲା—"ସୁରେଶ ଭାଇ ଚଞ୍ଚଳ କହନ୍ତୁ ଯେ କାମଟା କଅଣ, ମୁଁ ତା'ର ସମ୍ପୂର୍ଣ୍ଣ ଭାର ନେଇଯିବି, ସେ ଯେତେ କଷ୍ଟ କାମ ହେଉନା କାହିଁକି ।"

ବିପିନ୍ଙ୍କ ଘର କ୍ଲବ ଘରଠାରୁ ୧୦/୧୫ ଘର ଛଡ଼ାରେ । ବଡ଼ ଭଉଣୀ ଦୁହେଁ ସବୁ ଗୁଣରେ ଭରପୂର । ଭଲ ପାଠ ପଢ଼ନ୍ତି, ଗୀତ ବୋଲନ୍ତି, ଘର କାମରେ ବି ଧୁରନ୍ଧର । ଦୁଇଟିଯାକ ପରେ ପୁଅ ହେଲା ବୋଲି ବିପିନ୍ ପିଲାଦିନୁ ବୋଉଙ୍କର ଗେହ୍ଲା ହୋଇଗଲା । କେଣ୍ଟି ପାଠ ପଢ଼ିଲା ସେମିତି ଅନ୍ୟ ଗୁଣ ମଧ୍ୟ ସେମିତି । ଭାଇମାନଙ୍କ ସାମ୍ନାରେ ଯେବେ ଫୁଟାଣି କାଢ଼ିଲେ ବି ପଛରେ ତାକୁ ଭାରି ମାଡ଼ ମାଡ଼ ପଡ଼େ । ଗୀତ ବୋଲିବା, ଘର କାମ କରିବା ପିଲା ମାଇକିନିଆଁ କାମ, ହେଲେ ପାଠ ପଢ଼ିବା ? ସେ କାମଟା ବି ସେ ଦୁହେଁ କେମିତି ଏତେ ଭଲ କରି ପାରୁଛନ୍ତି ? ତା ଦ୍ୱାରା କାହିଁକି ହେଉନି ? ଅବଶ୍ୟ ସେ କେବେ ଫେଲ୍ ହୋଇନି । କିନ୍ତୁ ଏ ଘରର ଷ୍ଟାଣ୍ଡାର୍ଡ ସେମିତି ହୋଇଗଲାଣି ଫାଷ୍ଟ ହେବା । ଭିଣୋଇଙ୍କର ସ୍କୁଲର ମଧ୍ୟ ପରୀକ୍ଷା ଫଳ ବାହାରିଲା ଦିନ ତାକୁ ଅଣ୍ଟା କରିଦିଏ—"ହେବ ! ଆମ ବିପିନ ବାବୁ ଖୋଇ ପାସ୍ କରୁଛନ୍ତି ନା ସେ ଫେଲ୍ ଚୋଉ ଦଳେ ।" ଭାଇମାନେ ପରୀକ୍ଷା ପୂର୍ବରୁ ପାଠ ଦେଖନ୍ତି, ଭୁଲିଲେ ଗାଳି ଦିଅନ୍ତି କିନ୍ତୁ ସେ ପାସ ବୋଲି କାଁ କଅଣ ଫଳ ବାହାରିଲା ଦିନ ସେମାନେ ଚୁପ୍, ବରଂ ମନଦେଇ ପଢ଼ିଲେ ଆରଥରକୁ ଭଲ କରିବ ବୋଲି କୁହନ୍ତି । ଆଉ ବାପା—ବିପିନ୍ ଶୋଇ ସାରିଲା ପରେ ସେ ବ୍ୟସ୍ତ ହୁଅନ୍ତି ଓ ବୋଉକୁ ତା'ର ସମସ୍ତ ଖରାପ ଗୁଣ ଲାଗି ଦାୟୀ କରି ଗାଳି ଦିଅନ୍ତି । ବୋଉ ପ୍ରଥମେ ଯୁକ୍ତି କରେ, "ମୋର ଝିଅଙ୍କୁ ଖରାପ ହୋଇ ଯାଉଛି, ତୁମର କ'ଣ କିଛି ଦାୟିତ୍ୱ ନାହିଁ ? ତୁମେ ତାକୁ ଭଲ କେମିତି ହେବ କହି ଦେଉନ ?" ଆଉ ତା'ପରେ ସେଠୁ ଯୁକ୍ତିଯାଏ ଓ ଲୁଚେଇ ଲୁଚେଇ କାନ୍ଦେ ।

ବିପିନ୍କୁ ଅନ୍ୟମାନଙ୍କ ବ୍ୟସ୍ତତା ବିଶେଷ ଖରାପ ଲାଗେନି କିନ୍ତୁ ତା'ର କ୍ଲବ ଲାଗି ବୋଉ ଗାଳି ଖାଇ କାନ୍ଦିବା ତାକୁ ଖୁବ୍ ବାଧେ । ସେ ବରାବର ଗଣେଶଙ୍କୁ କୁହେ, "ତୁମେ ପରା ପାଠର ଠାକୁର, ମତେ ଟିକେ ଭଲ ପାଠ ଦିଅ—ମୋ ଲାଗି ନୁହେଁ ପ୍ରଭୁ, ମୋ ବୋଉ ଲାଗି ।" ଏ ଘଟଣା ଅନେକଥର ଘଟିଛି । ଗଣେଶ ତା' କଥା କେବେ ଶୁଣିଲାପରି ତାକୁ ଲାଗିନି । ଆଜି ସୁରେଶ ଗଣେଶଙ୍କ ପାଖକୁ ଯିବା ଲାଗି ତା' ବାଟଟା ସେମିତି ଖୋଲି ଦେଲା—"ତୁମେ ତାଙ୍କୁ ହସାଇବ ।"

ଅସ୍ଥିର ବିପିନ୍କୁ ତା'ଜାଗାକୁ ଫେରିଯିବାକୁ କହି ସୁରେଶ ଆରମ୍ଭ କଲା—ନାଲିନେଳି କାଗଜର ଝାଲର, ରଙ୍ଗୀନ୍ ଶାଢ଼ୀ, ପରଦା, ଟାଇଲ୍ସ ଓ ବଲ୍ବ ଗୁଡ଼ିକରେ ରଙ୍ଗୀନ କାଗଜ ଗୁଡ଼େଇ ଆଲୁଅକୁ ରଙ୍ଗୀନ୍ କରିବା ବା ପଛପଟୁ ଟେବୁଲ୍ ଫ୍ୟାନ୍ ଘରି ନାଲିନେଳି କାଗଜକୁ ସରୁ ସରୁ କରି କାଟି ଲାଇଟ୍ ଆରେଞ୍ଜମେଣ୍ଟ କରି ହୋମ ନିଆଁ ପରି ଦେଖେଇବା, ଏସବୁ ପିଲାଏ ନିର୍ଜୀବ କଥା, ଜୀବନ୍ତ କଅଣ ଜାଣିଛ, ଯେ ଠାକୁରଙ୍କୁ ପ୍ରକୃତରେ ହସେଇବ ?

ସେ ହେଲା ସକାଳର "କାକରଧୁଆ ଫୁଲ ଓ ପତ୍ର" । ଯାହା ସହରରେ ତ ପ୍ରତ୍ୟେକଟି ଘର କଥା ଛାଡ଼, ହିସାବ କରି ବସିଲେ ପ୍ରତି ୫୦ ଫୁଟ ବ୍ୟବଧାନରେ ଗୋଟିଏ ଗୋଟିଏ ଗଣେଶ ବସିବେ । ତେବେ ଆମ ଭାଗକୁ ଫୁଲ ପତ୍ର ପଡ଼ିବ କୋଉଁଠୁ ? ଆଉ ଆମ ଠାକୁର ହସିବେ କେମିତି ?"

କୋଉଠୁ ଗୋଟେ ସରୁଆ ସ୍ୱର ଶୁଭିଲା—"ମୁଁ ତ ସେଦିନୁ କହୁଛି ଆମ ମାସିକ ଚାନ୍ଦା ଟଙ୍କାରେ ନର୍ସରୀରୁ ଭଲ ଭଲ ଫୁଲ କୁଣ୍ଡ କିଣି ଆଣି ରଖନ୍ତେ । ସେ ଦାୟିତ୍ୱ ତ ନେବାକୁ କେହି ରାଜି ହେଲେନି । ଲୋକେ କୁଣ୍ଡରେ ବାଇଗଣ ଲଙ୍କା ଭଳି ପରିବା ଚଲାଉଛନ୍ତି । ମୋ କଥା ମାନିଥିଲେ ଆଜି ଫୁଲର ଅଭାବ ହୋଇଥାନ୍ତା ?"

ସୁରେଶ ସେ କଥାକୁ ଗୋଳେଇ ଦେଇ ବିପିନ୍‌କୁ ଚାହିଁ କହିଲା "ହଉ ସେତ ପରକଥା, ଏଇଲେ ତା ଲାଗି ବେଳ ନାହିଁ, ବର୍ତ୍ତମାନ କଅଣ କରାଯିବ ଆଗ ବିଚାର କର ବୁଝ, କିଏ ଏ ଦାୟିତ୍ୱ ନେବ।"

ବିପିନ୍‌ର ମନ ପ୍ରଥମେ ଦବି ଗଲା। ଫୁଲ, ଡାଳ ପତ୍ର ଏ ସବୁ ସହରେ ମିଳିବ କୋଉଠୁ ? ତାଙ୍କର ଶ୍ରେଷ୍ଠ ବଗିଚାଟିଏ ଅଛି ହିଁ, ଆଉ ସମ୍ପ୍ରତି ଙ୍କର ମନା ମଧ୍ୟେ ଜଗର- ଦସ୍ତି ଫୁଲତକ ସେ ଅବଶ୍ୟ ଆଣି ପାରିବ ତେବେ ସେ ତା ଦେବେ ? ସେଥିକାରେ କଅଣ ଠାକୁର ହୁଏ ପାରିବେ ? ତାକୁ ପର ବାଡ଼ିରୁ ଫୁଲ ଚୋରି କରିବାକୁ ପଡ଼ିବ, ନୁହେଁ ? ସେ ପାରିବ ତ ? ପିଲାଦିନୁ "ଫୁଲ ଛିଣ୍ଡାନା ବାପା ରାଗିବେ" ବୋଲି ବୋଉ ମୁହଁରୁ ସେ କେବେ ଶୁଣିନି, ସେଥିଓ ଫୁଲ ଛିଣ୍ଡାଇଲେ ବାପା ଭୀଷଣ ରାଗନ୍ତି, ବଗ୍ ଫୁଟ୍ ଆଗରେ ଯାହା ପଡ଼େ କଷ୍ଟୁଡ଼ି ରାଗନ୍ତି. ବୋଉକୁ ଗାଳି ଦିଅନ୍ତି। ତଥାପି ବୋଉ କହେ, "ଫୁଲ ଛିଣ୍ଡାଇଲେ ଗଛକୁ କାଟିବ, ଆମେ ଯିମା ତା କାନ୍ଦ ଶୁଣି ପାରୁନେ କିନ୍ତୁ ତାକୁ କାଟିଲେ ସେ କାନ୍ଦେ। ଏଇଲେ ଅବଶ୍ୟ ସେ ବଡ଼ ହୋଇଗଲାଣି। ତଥାପି ପର ବାଡ଼ିରୁ ଫୁଲ ଚୋରି କରି ଆଣିବା ଭାରି କଷ୍ଟ।

ସୁରେଶ୍ କଥା ପୁଣି ତାକୁ କ୍ଲବ ଘର ଭିତରକୁ ଫେରେଇ ଆଣିଲା—"କ'ଣ ବିପିନ କଷ୍ଟ କାମ ଶୁଣି ଚୁପ୍ ଚାପ୍ ବସିଗଲୁନା କ'ଣ ? "ଏଇଲେ ପରା ସମସ୍ତେ ଭାର ନେବୁ ବୋଲି କହୁଥିଲୁ ?"

ବିପିନ୍ ନିଜକୁ ଏକାଠି କରି ନେଲା। ଠାକୁରଙ୍କୁ ହସେଇବା ଲାଗି ସବୁ କିଛି କରିବାକୁ ହବ। ଗଣେଶ ହସିଲେ ବୋଉ ଆଉ କାନ୍ଦିବନି। ସେ ଏଥର ତା ଜାଗାରୁ ଉଠି ଠିଆ ହୋଇ ପଡ଼ିଲା ଓ ଦୃଢ଼ ସ୍ୱରରେ କହିଲା—"ହଁ ସୁରେଶ୍ ଭାଇ ସେ ଭାର ମୋର"।

ଏଇ କେତେଦିନ ବିପିନ୍‌କୁ କ୍ଲବ ଘରେ ଖେଳ ପଡ଼ିଆରେ କି ସାଙ୍ଗମାନଙ୍କ ସାଙ୍ଗେ ବୁଲିବାର କେହି ଦେଖିଲେ ନାହିଁ। ତା'ର କାମହେଲା ସାଇକେଲରେ ସହର ପରିକ୍ରମା କରି ପ୍ରତି ଲୋକର ବଗିଚାକୁ ନଜର ଦବା। ସେଇ ସବୁ ଘରେ ନୂଆ ନୂଆ ଫୁଲ ଗଛ ଅଛି ସେ ଘରେ କୁକୁର ଅଛନ୍ତି ନା ନାହିଁ ଦେଖିବା ଓ ସେ ଲୋକଙ୍କ ଚାଲିଚଳନ ଜାଣିବା।

ଶେଷରେ ଗଣେଶ ପୂଜା ପୂର୍ବଦିନ ସନ୍ଧ୍ୟାବେଳୁ ସେ ନିଜକୁ ପ୍ରସ୍ତୁତକରି ନେଲା। କାହାପରେ କେଉଁ ଜାଗାକୁ ଯିବାକୁ ହେବ ଲକ୍ଷ୍ୟ କରି ନେଲା। ସାଇକେଲ୍‌ରେ ପମ୍ପ୍ ଅଛି କି ନାହିଁ, କୋଉ ପ୍ରକାର ବ୍ୟାଗ ନେଲେ ଫୁଲର ପାଖୁଡ଼ା ଡାଳଗୁଡ଼ିକ ନଷ୍ଟ ନ ହେବ ସେ ବିଷୟରେ ସଜାଗ ହୋଇଗଲା। ରାତି ନଅଟା ସୁଦ୍ଧା କ୍ଲବ ଘର ଆଡ଼େ ଥରେ ବୁଲି ଆସିଲା। ମୂର୍ତ୍ତି ବେଶ ବଡ଼, ସୁନେଲି ରଙ୍ଗର, କି ସୁନ୍ଦର କୁଲୁକୁଲିଆ ମୂର୍ତ୍ତିଟିଏ ତାଙ୍କ ପାଖରେ। ଆଜିକାଲି ଓ୍ୱେଷ୍ଟର୍ଣ୍ଣ ଷ୍ଟାଇଲ୍‌ରେ ବି ଗଣେଶ ନାଚ କଲେଣି। ହେଲେ ତାଙ୍କର, ଠିକ୍ ସେମିତି ଗଣେଶଙ୍କୁ ସେ ମନେ ମନେ ଆରାଧନା କରେ ତା ବୋଉର କାନ୍ଦ ବନ୍ଦ କରିଦବାପାଇଁ। ସେମିତି ସୁରେଶ୍ ଭାଇର ପସନ୍ଦକୁ ସେ ତାରିଫ୍ କଲା। କ୍ଲବ୍‌ର ବଡ଼ ବଡ଼ ପିଲାଏ ଘର ସଜାଇବାରେ ବ୍ୟସ୍ତ ଥିଲେ। ରାତିସାରା କାମ କଲେ ସକାଳକୁ ଘର ହୋଇଥିବ। ତାର ଠାକୁରଙ୍କୁ ହସେଇବା କାମ ତା'ର। କେହି ଜଣେ ଏ କଥା ତା'ର ମନେ ପକେଇ ଦେଲା। ସେ କିଛି ଉତ୍ତର ନ ଦେଇ ସେଠୁ ବାହାରି ଆସିଲା। କାମରେ ସେ ଦେଖେଇ ଦବ, କଥାରେ ନୁହେଁ।

ରାତି ବାରଟା ପରେ ସେ ଘରୁ ଚୁପ୍ ଚାପ୍ ବାହାରି ଚାଲିଗଲା ଚାନ୍ଦ କଦାଚ ବାହାରୁ ଲଗେଇ ଦେଇ। ଠିକଟା ବେଳକୁ ସେ ପ୍ରଥମ ବଗିଚା ବ୍ୟାଗ ଭର୍ତ୍ତି କରିବା ଧୂଆଁ ସତେକି ଫୁଲ ଧରି କ୍ଲବ୍ ଘରେ ପହଞ୍ଚିଲା। ଏତେ ଫୁଲ। ବଡ଼ ବଡ଼ ପିଲାଏ ପ୍ରଶଂସାରେ ଫାଟି ପଡ଼ୁଥିଲେ। ବଡ଼ ଡାଲାରେ ଫୁଲତକ ଅଜାଡ଼ି ଦେଇ ସେ ପୁଣି ବାହାରି ଚାଲିଗଲା। ଏଥର ତାର ପସନ୍ଦର ପାଳି—କେଣ୍ଡୁ କଣ୍ଟୁରି ମଧ୍ୟ ସାଙ୍ଗରେ ନେଇଛି। ତାଲପଣ୍ଡ ଫଂସହକରି ତା ଲିଷ୍ଟର ସବୁ ବଗିଚା ବୁଲି ଫେରିଲାବେଳେ ତାହାଁକୁ ଜଣାଣି ତା ସାଇକେଲ ଅନ୍ୟ ଏକ ରାସ୍ତା ଧରିଲା। ଆସରେ ଶ୍ରେଷ୍ଠ ବଗିଚାଟିଏ। ପ୍ରସିଦ୍ଧ ହୋଇ ଯିବା ଉତ୍ସବରେ ଫୁଲ କୁଣ୍ଡ ସବୁ ଘର ଭିତରକୁ ଉଠିଯାଇଛି। ଖାଲି ସାମ୍ନାରେ ଗେଟ୍ ପାଖକୁ ସମାନ ବ୍ୟବଧାନରେ ଦୁଇଟି ଦୁର୍ଲଭ 'ଅର୍କିଡ୍ସ' ଗଛ। ପାଞ୍ଚଫୁଟ ଲେଖାଏଁ ଉଚ୍ଚ ହେବ। ଦୁହେଁ ଏକାପରି ବଢ଼ିଛନ୍ତି। ଏ ଗଛମାନଙ୍କର ଦାମ ନିଶ୍ଚିତ ବେଶୀ, ଅଥଚ ଏମାନେ ଉଧାନ୍ତ ଖୁବ କଷ୍ଟରେ, ସେ ଜାଣେ। ତଥାପି ବିପିନ ଲୋଭ ସମ୍ବରଣ କରି ପାରିଲା ନାହିଁ। ତା' ଭିତରେ କିଏ ଯେମିତି କହୁଛି ଗଣେଶଙ୍କୁ ହସେଇବାଲାଗି ଯେତେ ମୂଲ୍ୟବାନ ଉପହାର ସେ ଦେଇ ପାରିବ ଗଣେଶ ସେତେ ଶୀଘ୍ର ତା ବୋଉ ମୁହଁରୁ କାନ୍ଦ ଲୁଚେଇ ଦେବେ। ସେ ସେଇଠି ମୁଣ୍ଡି ମାରିଲା।

ଏକେବାରେ ମୂଳରୁ କଣ୍ଟୁରିରେ ହାଣିଥିଲି ସେଠ୍ ଉଠେଇ ଦୁଇଟିଯାକ ଗଛକୁ ସାଇକେଲ କ୍ୟାରିଅରରେ ସାବଧାନରେ ରଖି ଜୋର ଜୋର କ୍ଲବ୍ ଘରକୁ ଫେରି ଆସିଲା। ଗଛ ଦୁଇଟି ଉପରେ ଆଖି ପଡ଼ିବା ମାତ୍ରକେ କେହି ଜଣେ ବଡ଼ ପିଲା ଚିତ୍କାରକରି ଉଠିଲା—ହଇରେ

ବିପିନ ! ଏ ସବୁ ହାଣିବାଲାଗି ତୋ ହାତ ଗଲା ?
ଯେତେ କଷ୍ଟରେ ମଣିଷ ପିଲାକୁ ବଢ଼େଇଲାପରି ସେ
ସବୁ ବଢେଇଥିବେ । ଏ ମାଛର କାମ ନୁହେଁ, ସେ
ସବୁ ମା'ର ଆଦରର ଧନ । ବିପିନର ମୁହଁ ଝାଉଁଳି
ପଡ଼ିଲା । ତା'ର ସବୁ ସଉକ ମରିଗଲା । ହଜିଲାପରି
ଘଟଣାଟିଏ ତା ମନରେ ଖେଳିଗଲା ।

ଗଲା ଗ୍ରୀଷ୍ମ ଛୁଟିରେ ଗାଁରେ ଠାକୁରାଣୀଙ୍କ ପାଖେ
ଜନ୍ତାଳ ହଉଥାଏ । ସହର ପିଲା, ଏତେବେଳଯାଏ ଏତେ
ମାଛ ପୋଖରୀରୁ ଧରା ହେବାର ଆଗରୁ ଦେଖି ନଥିଲା ।
ଘରକୁ ଯାଇ ସେ ଖବର ବୋଉକୁ ଦେବ ଓ ଶ୍ରେଷ୍ଠ
ଭଉଣୀକୁ ଆଣି ଏତେ ବଡ଼ ବଡ଼ ମାଛ ଦେଖେଇବ
ବୋଲି ଦୌଡ଼ି ଦୌଡ଼ି ଘରେ ପହଞ୍ଚିଲା ବେଳକୁ ବାପା
ଖାଇ ବସିଛନ୍ତି, ଶ୍ରେଷ୍ଠ ଭଉଣୀଟି ତାଙ୍କର ପାଖରେ
ଗୁଲୁଗୁଲୁ ଗାଲରୁ ନଖ ଏକାଠି ଖେଳଣ ଝୁଲୁଚି । ବାପା
ମଝିରେ ମଝିରେ ତା ପାଟିରେ ଭାତ ଟିକେ ଟିକେ
ଦଉଛନ୍ତି । ବାପ ଝିଅଙ୍କ ଆନନ୍ଦରେ ପାଖରେ ଠିଆ-
ହୋଇ ବୋଉର ଆଖି ଚକ ଚକ କରୁଚି । ସେ ସଙ୍ଗେ
ସଙ୍ଗେ ଆରମ୍ଭ କଲା, "ବୋଉ ! ଆମ ଠାକୁରାଣୀଙ୍କ
ପାଖରେ ଏତେ ବଡ଼ ବଡ଼ ମାଛ । ମୁଁ ଆଗରୁ କେବେ
ଦେଖି ନଥିଲି ।" ତାଙ୍କ କଥା ସରିବ ଏତିକିବେଳେ
ପରିଆଡ଼େ ତାକୁ ଅଧିକା କହିବାକୁ ନଦେଇ କହି
ପକେଇଲେ—"ଏତିକ ବଡ଼ ବଡ଼ କଥଣ ମ ! ଆମ ଝିଅ
ଝିଅଙ୍କ ପରି ମାଛମାନ ତ ମହାପାତ୍ରଙ୍କ ବାଡ଼ପଟେ ଭଙ୍ଗା
ଲାଗିଚି । ଉକାଳରେ କେଉଁଠୁଣି କାଟି ଲାଗିଛନ୍ତି ।"

ବିପିନ ଠିକ୍ ଦେଖିଚ, ବାପା ଉଠେଇଥିବା ଖଣ୍ଡ
ମୁଣ୍ଡାଟା ଥାଳିରେ ଥୋଇଦେଲେ । ଆଉ ଥିରେ ଟିକି
ଝିଅ ଅଡ଼ାକୁ ଥରେ ଚୁମ୍ବିଲେ ତା'ପରେ ଉଠିଗଲେ ।
ବିପିନ ଆଶ୍ଚର୍ଯ୍ୟ ହେଲା, ବାପା ଭାତ ଅଧା ଖାଇ
ଉଠିଗଲେ ମଧ୍ୟ ବୋଉ ସବୁଦିନ ପରି ଆଉ କିଛି
ଖାଇବାପାଇଁ ଯୋର କଲାନାହିଁ । ବାପା ସେ ଜାଗା
ଛାଡ଼ି ଚାଲିଯିବା ପରେ କହିଲା—"ତୁମେ ବୁଢ଼ା ହେଲଣି
ଗୋପୀନାଥ ! କଟା ହେଉଥିବା ମାଛକୁ ମଣିଷ ପିଲା ସାଙ୍ଗେ
ସମାନ କରୁଚ ? ଆଉ କେବେ ତୁମର ବୁଦ୍ଧି ହେବ ?"

ରାତିରେ ଜନ୍ତାଳ ଖେଳକୁ ବାପା ତ ଗଲେନାହିଁ ।
ହେଲେ ଖେଳ ଶାଳ ବନ୍ଦିଲାବେଳେ ମୁଣ୍ଡା ମୁଣ୍ଡା ମାଛ
ଭରକାଏ ଦେଖି ବିପିନର ଦେହ ଆଉଣ୍ଡେଇ ହୋଇ
ଯାଇଲା । ସେ ତ ନ ଖାଇ ଶୋଇଥିଲା ।

ତା ବାଉଳା ମୁହଁକୁ ଦେଖି ସୁରେଶ ପରିସ୍ଥିତିକୁ
ସହଜ କରିଦେଲା—"ମଣିଷ ପିଲାପରି ବଢ଼େଇଥିବ
କଥଣ ରେ ! ମଣିଷ ପିଲାକୁ ତ ମା' କୋଳରୁ ଟାଣିଆଣି
ତା'ର ଆଖି ଆଗରେ କାଟିଦେଇ ଖୁସି ଯାଉଛନ୍ତି । ଆଉ
ଗଛ ଦଟା କାଟି ଆଣିଲୁ ସେ କ'ଣ ହୋଇଗଲା ?
ଛଅ ମାସରେ ଦର ହଉଥିବା ଏ ଗଛକୁ କାଟିବାଲାଗି
ଆମର ତ ଧନ ନାହିଁ ? ସେ ଲୋକ ଏ ଟଙ୍କା ପାଇଲା
କୋଉଠୁ ? ଏ ଗଛ ସେ ପଦାରୁ ଆଣି ଲଗେଇ
ଦେଇ ପାରୁଚ ଯେ ଆଉଥରେ ଆଣି ଲଗେଇ ଦବନ ?
ଆମ ଗଣେଶଙ୍କୁ କରୁ ଏ ଚମତ୍କାର ମାନବ ।" ଏପରି
କଥା ସଙ୍ଗେ ବିପିନ ସେଠି ଆଉ ମୁହୂର୍ତ୍ତେ ରହି ପାରିଲା
ନାହିଁ ।

ଘରେ ବି କୋଉଥିରେ ତା'ର ମନ ଲାଗିଲାନି ।
ପୂଜାମଣ୍ଡଳ ବେଳକୁ ପିଲାଏ ଆସି ତାକୁ ବାଧ୍ୟ କରି କ୍ଲବ୍
ଘରକୁ ଡାକି ନେଇଗଲେ । ଗଣେଶଙ୍କ ମୁହଁକୁ ଚାହିଁବାକୁ
ତାକୁ ଡର ମାଡୁଥାଏ । ଗଛ ଦୁଇଟି ଗଣେଶଙ୍କ ମେଢ଼
ଦୁଇପଟେ ବଡ଼ ବଡ଼ କୁଣ୍ଡରେ ମାଟିରେ ପୋତା
ହୋଇଥାଏ, ଆଉ ସତେଜ ରହିବ ବୋଲି କେହି ଜଣେ
ତା ଉପରେ ପାଣି ସିଞ୍ଚୁଥିଲା । ପାଣିସବୁ ଟୋପା ଟୋପା
ହୋଇ ସେଥିରୁ ଖସି ପଡୁଥାଏ । ବିପିନ କାନରେ
ବାଜି ଯାଉଥାଏ । 'ମଣିଷ ପିଲା ପରି ବଢ଼େଇ ଥିବେରେ
ସେ ସବୁ ମା'ର ଆଦରର ଧନ ।"

ବସ୍ତ୍ର ଦାନ ଲାଗି ବ୍ରାହ୍ମଣଙ୍କ ଅନବରତ ହାତରେ
ଲଗା ଚକ୍କଳ ଗଣେଶଙ୍କ ଦୁଇ ଆଖିର କୋଣରେ ଲୁହ
ଲେଖିବା ଭଳି ବିପିନକୁ ଦିଶିଲା । ଗଣେଶ ହସୁ ନାହାନ୍ତି
କାନ୍ଦୁଛନ୍ତି । ପୁତ୍ରହରା ମା'ର ଦୁଃଖରେ କାନ୍ଦୁଛନ୍ତି ।
ବିପିନ ସେଠୁ ଛୁଟିପିଟି ହୋଇ ପଳେଇ ଆସିଲା ।
ପୂଜାମଣ୍ଡଳ ଲାଗି ଗଣେଶ ବନ୍ଦନା ତା ପଛରେ ଶୁଭୁଥାଏ ।
ବିଦଣ୍ଡାଳ ସେ ଯାଗା ସହର ନଦୀକୂଳ ଚାଲିଲା । କ୍ଲାନ୍ତ
ହୋଇ ଖାଲ ଦଣ ପାଖାପାଖି ଘରକୁ ଫେରି ଗେଟ୍
ପାଖରେ ସେ ଟିକେ ଅଟକି ଗଲା । ସବୁଦିନ ସେ
ବାହାରେ ବୁଲୁଛି । ବାପା ବୋଉକୁ ସେଥିପାଇଁ ଗାଳିଦେଇ
ନ ଥିବେ ତ ? ଯାହା ମୁହଁରୁ ଲୁହ ଶୁଖାଇବ ବୋଲି
ସେ ଏତେ କଷ୍ଟ ହେଉଚ ସେ ଆଜି କାନ୍ଦ ନ ଥିବ
ତ ?

ଘର ଭିତରୁ କଟକ ରେଡ଼ିଓ ଷ୍ଟେସନରୁ ପ୍ରସାରିତ
"ଗଣେଶ" ଗୀତନାଟ୍ୟ ଖୁବ୍ ଯୋରରେ ଶୁଭୁଚ ।
ଧୀରେ ଧୀରେ ସେ ଯାଇ ଘର ଝରକା ପାଖକୁ ଆସିଲା ।

ବିଷ୍ଣୁଙ୍କ ମାୟା ଦ୍ୱାରା, ଶିବ କର୍ତ୍ତୃକ ଗଣେଶଙ୍କ
ଶିରଚ୍ଛେଦ, ତା'ପରେ, ଓଃ ! ପାର୍ବତୀଙ୍କର ସେ କି କରୁଣ
କାନ୍ଦଣା । ତା ସାଙ୍ଗେ ସାଙ୍ଗେ ଗୋଟିଏ କୋହକୁ
ଚାପିବାକୁ ଚେଷ୍ଟା କରୁଥିବା ଏକ ଦୀର୍ଘଶ୍ୱାସ ସରଟିକୁ

ଥମ୍ ଥମ୍ କରି ଦେଉଥିଲି । ପାର୍ବତୀଙ୍କ ସ୍ୱର ତା କାନରେ ବାଜୁଥାଏ—"ମୋ ପୁଅକୁ ଯେଉଁ ହାତରେ ମାରିଦେଲ ପ୍ରଭୁ, ମତେ ସେଇ ହାତରେ ମାରିଦିଅ । ରଘୁଣି ପରି ପୁଅକୁ ହରାଇ ମୁଁ ଆଉ ବଞ୍ଚିବାକୁ ଚାହେଁ ନାହିଁ ।"

ହଠାତ୍ ଏତିକିବେଳେ ତାଙ୍କ ଜୀବନରେ ଥିବା ସ୍ୱପ୍ନଲତା ଲିଭିଗଲା ଓ ତାଙ୍କ ଦେହରୁ ମଧ୍ୟ ବଳ ହୋଇଗଲା । କୋହକୁ ଚାପିରଖିବା ଧୈର୍ଯ୍ୟ ଆଉ ପାରିଲ ନାହିଁ । ରଘୁନିର ବୃଦ୍ଧଦର୍ଶର ପ୍ରାଣ ଭଉଣୀ ପାର୍ବତୀଙ୍କ ଶୋକରେ ଅଧୀର ହୋଇ କହିଁ କହିଁ ହୋଇ କାନ୍ଦି ଉଠିଲି । ଅଚାନକ ଭିତରେ ତାଙ୍କୁ ବୁଝେଇବାକୁ ଯାଇ ବୋଉଙ୍କ ସ୍ୱର ମଧ୍ୟ ଭାଙ୍ଗି ପଡୁଥାଏ ।

ରଘୁନି ନିଜକୁ କୌଣସି ମତେ ସମ୍ଭାଳିନେଇ ଅନ୍ଧାରରେ ଘର ଭିତରକୁ ପଶିଯାଇ ବୋଉଙ୍କ କାଖରୁ ଟିକି ଭଉଣୀକୁ ନେଇ ଆସିଲାବେଳେ ସେ ଛଟିପିଟି ହୋଇ କହୁଥାଏ—ତାଙ୍କୁ ଗାଳି ଦେଇ ଫାଶୀ ଦେଲେ "ତାଙ୍କ ମା'ଙ୍କ ପାଖରେ ଆଉ ରାତିରେ କିଏ ଶୋଇବ ?" ଏଇ ପଦକ କଥାରେ ରଘୁନିର ଛାତି ଥରିଗଲା । ଟିକି ଭଉଣୀଟି ତା'ର, ସତରେ ଯେଉଁ 'ଅର୍ଦ୍ଧାଙ୍ଗିନୀ' ଗଢ଼ର ନ ହୋଇପାରିଲା ଆଉ ତା'ର ପାଖରୁ କ୍ଷମା ପାଇବାଲାଗି ରଘୁନି ଟିକି ଭଉଣୀକୁ ଛାତିରେ ଜାକିଧରି ଭେ ଭେ ହୋଇ କାନ୍ଦି ପକେଇଲା ।

---

## ମହାଜନଙ୍କ କବଳରୁ ଗରିବ ଶ୍ରେଣୀର ଲୋକଙ୍କୁ ମୁକ୍ତ କରିବା ନିମନ୍ତେ ଓଡ଼ିଶା ସରକାର କଣ କଲେ ?

* ୧୯୭୫ ମସିହା ଓଡ଼ିଶା ମହାଜନୀ (ସଂଶୋଧନ) ଅଧିନିୟମ ସେପଟେମ୍ବର ମାସ ୨୨ ତାରିଖରେ ଜାରି କରାଗଲା ।

* ରେଜିଷ୍ଟ୍ରିଭୁକ୍ତ ହୋଇଥିବା ମହାଜନମାନେ କେବଳ ମହାଜନୀ କାରବାର ଚଳାଇ ପାରିବେ ।

* କୌଣସି ମହାଜନ ବନ୍ଧକ ରଖି ଦେଇଥିବା ଋଣ ଉପରେ ସୁଧ ବାବଦକୁ ସରଳସୁଧ ଶହକଡ଼ା ୯ ଟଙ୍କା ଓ ବନ୍ଧକ ନରଖି ନେଇଥିବା ଋଣ ଉପରେ ସରଳ ସୁଧ ଶହକଡ଼ା ୧୨ ଟଙ୍କାରୁ ଅଧିକ ସୁଧ ଧାର୍ଯ୍ୟ କରିପାରିବେ ନାହିଁ ।

* ସୁଧ ଆକାରରେ ମହାଜନମାନେ ମୂଳଧନରୁ ଅଧିକା ନେଇ ପାରିବେ ନାହିଁ । ଯେଉଁ କ୍ଷେତ୍ରରେ ଅସୁଲ କରାଯାଇଥିବା ଅର୍ଥର ପରିମାଣ ମୂଳ ଋଣ ସଙ୍ଗେ ସମାନ ହେଉଥିବ କିମ୍ବା ମୂଳ ଋଣର ଦୁଇଗୁଣରୁ ଅଧିକା ହେଉଥିବ; ସେ କ୍ଷେତ୍ରରେ ସଂପୃକ୍ତ ଋଣ ପରିଶୋଧ କରାଯାଇଛି ବୋଲି ଧରି ନିଆଯିବ ।

* ଯେଉଁଠି କୌଣସି ମହାଜନ ମୂଳଧନର ଦୁଇଗୁଣରୁ ଅଧିକ ଅର୍ଥ ଆଦାୟ କରିଥିବାର ଜଣାଯିବ; ସେପରି ସ୍ଥଳେ ଅଧିକ ଅସୁଲ ହୋଇଥିବା ଅର୍ଥ ଋଣ ଗ୍ରହୀତାଙ୍କୁ ଫେରସ୍ତ ଦିଆଯିବ ।

* ଯଦି କୌଣସି ମହାଜନ ବନ୍ଧକ ରଖି ଋଣ ଦେଇଥାନ୍ତି ଓ ୭ ବର୍ଷରୁ ଅଧିକ ସମୟ ପର୍ଯ୍ୟନ୍ତ ବନ୍ଧକ ସଂପତ୍ତିକୁ ଉପଭୋଗ କରିଥାନ୍ତି ତେବେ ସଂପୃକ୍ତ ଋଣ ପରିଶୋଧ ହୋଇଯାଇଛି ବୋଲି ଧରି ନିଆଯିବ । ବନ୍ଧକ ରଖିଥିବା ସମ୍ପତ୍ତି ୭ବର୍ଷ ସମ୍ପୂର୍ଣ୍ଣ ହେବାର ୩ମାସ ମଧ୍ୟରେ ଋଣ ଗ୍ରହୀତାଙ୍କୁ ଫେରାଇବାକୁ ପଡ଼ିବ ।

* ସଂପୃକ୍ତ ଆଇନର କୌଣସି ବ୍ୟବସ୍ଥାକୁ ଲଂଘନ କଲେ ରେଜିଷ୍ଟ୍ରେସନକୁ ୩ବର୍ଷ ପର୍ଯ୍ୟନ୍ତ ରଦ୍ଦ କରିବା ପର୍ଯ୍ୟନ୍ତ ସଂପୃକ୍ତ ଏସ୍. ଡି. ଓ. ଓ ତହସିଲଦାରଙ୍କୁ କ୍ଷମତା ପ୍ରଦାନ କରାଯାଇଛି ।

* କୌଣସି ମହାଜନ ଯଦି ବନ୍ଧକ ସଂପତ୍ତିକୁ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ଫେରସ୍ତ ନ କରନ୍ତି, ତେବେ ତାଙ୍କୁ କାରାଦଣ୍ଡ କିମ୍ବା ଜୋରିମାନା କିମ୍ବା ଉଭୟ ଦଣ୍ଡରେ ଦଣ୍ଡିତ କରାଯିବ ।

* ଯଦି ଋଣ ନେଇଥିବା ବ୍ୟକ୍ତିଙ୍କର ଅଢ଼େଇ ଏକର କିମ୍ବା ତା'ଠାରୁ କମ୍ ଜମି ଥାଏ, ସେପରି ସ୍ଥଳେ ଅଧିନିୟମ ଜାରି ହେବା ଦିନଠାରୁ ଦୁଇବର୍ଷ ପର୍ଯ୍ୟନ୍ତ ତାଙ୍କ ବିରୁଦ୍ଧରେ ମହାଜନଙ୍କ ପକ୍ଷରୁ ଡିକ୍ରୀଜାରି ସ୍ଥଗିତ ରହିବ ।

# ଯେଉଁ ଆଧୁନିକ କାରିଗରୀ ବିଜ୍ଞାନରେ ଆମର ଟି ଭି ତିଆରି ସେହି ଭାବରେହିଁ ତିଆରି ଆମର ରେଡିଓ



ଟେଲିରାଡ ରେଡିଓ: ଟେଲିରାଡ ଟି.ଭି. ଭଳି ଚମତ୍କାରୀତା ଅର୍ଜନ କରିଛି ଟେଲିରାଡ ରେଡିଓ । ଏହାର ମୁଖ୍ୟ କାରଣ ହେଉଛି, ଟେଲିରାଡର ଟିଭିରେ ଟେଲିରାଡ ଯେଉଁ କାରିଗରୀ ପ୍ରାଧାନ୍ୟ ଲାଭ କରିଛି, ସେହି ସମାନ କାରିଗରୀ କୌଶଳ ରେଡିଓର କ୍ଷେତ୍ରରେ ମଧ୍ୟ ବ୍ୟବହୃତ ହୋଇଛି । ତେଣୁ ଭବିଷ୍ୟତରେ ଯେତେବେଳେ ରେଡିଓ କିଣିବେ, ସେତେବେଳେ ଟେଲିରାଡ ରେଡିଓ କୁ ଦେଖନ୍ତୁ ଓ ଶୁଣନ୍ତୁ । ଏକ, ଦୁଇ, ତିନି ବା ଚାରି ବ୍ୟାଣ୍ଡର ହେଉ ଏବଂ ଆପଣଙ୍କର ବଜେଟ୍ ଟ. ୮୫ ହେଉ ବା ଟ. ୧୫୦୦ ହେଉ, ଆପଣ ନିଶ୍ଚିତଭାବେ ଜାଣିପାରିବେ ଯେ ଆଧୁନିକ କାରିଗରୀ ବିଜ୍ଞାନ ତଥାପି ଏକ ଅଦ୍ଭୁତ ଇଲେକ୍ଟ୍ରୋନିକ ସୃଷ୍ଟି ଆପଣ ଦେଖୁଛନ୍ତି ଓ ଶୁଣୁଛନ୍ତି ।

**ଟେଲିରାଡ–ଏହାର ପଶ୍ଚାତରେ ରହିଛି ଭାବାଭାଇ ଇଲେକଟ୍ରନିକସ ରିସର୍ଚ୍ଚ ସେଣ୍ଟରର କାରୀଗରୀ ନିର୍ମାଣ କୌଶଳ ।**

# TELERAD

## ଟେଲିରାଡ – ଟି ଭି. ରେଡିଓ. ଟ୍ରାନଜିଷ୍ଟର. ଷ୍ଟିରିଓ ସିଷ୍ଟମ

Shilpi TR 30a/75 ଓଡ଼ି



# ଶ୍ରୀ ନେହେରୁଙ୍କ ପିଲାଦିନର କେତୋଟି କଥା

ଆମର ସ୍ୱର୍ଗତ ପ୍ରଧାନ ମନ୍ତ୍ରୀ ଶ୍ରୀ ଜବାହରଲାଲ ନେହେରୁ ଯେତେବେଳେ ଅତି ଛୋଟ ପିଲା, ସେତେବେଳଠାରୁ ତାଙ୍କ ମନରେ ଦେଶପ୍ରତି ଓ ଦେଶବାସୀଙ୍କପ୍ରତି ପ୍ରଗାଢ଼ ଅନୁରାଗ ଓ ସମ୍ମାନ ଜାତ ହୋଇଥିଲା । ପିଲାଦିନରୁ ସେ ଅତି ସରଳ ଓ ସତ୍ୟବାଦୀ ଥିଲେ । ତାଙ୍କୁ ୧୧ ବର୍ଷ ବୟସ ହେବାଯାଏ ତାଙ୍କର କୌଣସି ଭାଇଭଉଣୀ ନ ଥିଲେ । ତେଣୁ ସେ ଅତି ଗେହ୍ଲାରେ ବଢ଼ିଥିଲେ । ସେ ସ୍କୁଲରେ ପାଠ ପଢୁ ନ ଥିଲେ, ଘରେ ପଢୁଥିଲେ । ତାଙ୍କୁ ସବୁବେଳେ ଏକୁଟିଆ ଏକୁଟିଆ ଲାଗୁଥିଲା । ତାଙ୍କର ଖୁଡ଼ୁତା ପୁଅ ଭାଇମାନେ ତାଙ୍କଠାରୁ ବହୁତ ବଡ଼ ଥିଲେ । ସେମାନେ ଯାହା କଥାବାର୍ତ୍ତା ହୁଅନ୍ତି, ନେହରୁ ସେ ସବୁ ବୁଝି ପାରନ୍ତି ନାହିଁ । ତେବେ ଗୋରା ସାହେବମାନଙ୍କ ଦୁର୍ବ୍ୟବହାର ସମ୍ପର୍କରେ, ବିଶେଷକରି ଗୋରା ସାହେବମାନେ କିପରି ଆମ ଭାରତୀୟ ଲୋକଙ୍କ ଉପରେ ଅତ୍ୟାଚାର କରନ୍ତି, ସେମାନଙ୍କୁ ଘୃଣା କରନ୍ତି, ଏ କଥାଗୁଡ଼ାକ ସେ ଭଲ ଭାବରେ ବୁଝି ପାରୁଥିଲେ । ଏହି ସମସ୍ତରୁ ତାଙ୍କ ମନରେ ଗୋଟାଏ ଧାରଣା ହୋଇଯାଇଥିଲା ଯେ ଆମଦେଶ ସ୍ୱାଧୀନତା ହରାଇ ଥିବାରୁ ଆମମାନଙ୍କୁ ସବୁ କ୍ଷେତ୍ରରେ ଦୁର୍ଦ୍ଦଶା, ଅପମାନ ଓ ଗ୍ଳାନି ଭୋଗ କରିବାକୁ ପଡ଼ୁଛି । ଏଇ ଛୋଟ ବୟସରୁ ସେ ମନେ ମନେ ଭାରତକୁ ସ୍ୱାଧୀନ କରିବାକୁ ଚିନ୍ତା କରିଥିଲେ ।



ଇଂରେଜ ସାହେବମାନଙ୍କର ଆମ ଦେଶବାସୀଙ୍କ ପ୍ରତି ସବୁ ପ୍ରକାର ଦୁର୍ବ୍ୟବହାର ସତ୍ତ୍ୱେ ନେହରୁ କୌଣସି ଇଂରେଜ ଲୋକଙ୍କୁ କେବେ ଘୃଣା କରୁ ନଥିଲେ ।

ନେହରୁ ବଡ ଶୋଖୀନ ଥିଲେ । ତାଙ୍କ ବାପା ମୋତିଲାଲ କଚେରୀରୁ ଫେରି ସଞ୍ଜବେଳେ ତାଙ୍କ ସାଙ୍ଗମାନଙ୍କ ସହିତ ବସି ଖୁସି ଗପ କରନ୍ତି । ଖୁବ ଠୋ ଠୋ ହସନ୍ତି । ସେତେବେଳେ ଜବାହରଲାଲ ପରଦା ସନ୍ଧିରୁ ଲୁଚି କରି ଦେଖନ୍ତି । ତାଙ୍କ ବାପା କ'ଣ କରୁଛନ୍ତି । ସେ ବେଳେ ବେଳେ ଧରା ପଡଯା'ନ୍ତି । ତାଙ୍କ ବାପା ତାଙ୍କୁ ଟେକିନେଇ କୋଳରେ ବସାଇ ହସ ଖୁସି କରି ଛାଡ଼ି ଦିଅନ୍ତି । ବାପା ତାଙ୍କର ବେଳେ ବେଳେ ହ୍ୱିସ୍କି ମଦ ପିଅନ୍ତି । ସେ ଦୌଡ଼ି ଆସି ମା'ଙ୍କୁ କହନ୍ତି, ''ମା, ବାପା କ'ଣ ରକ୍ତ ପିଇଯାଉଛନ୍ତି'' । ତାଙ୍କୁ ଖୁବ ଡର ମାଡେ ।

## ପିତୃଭକ୍ତି

ନେହରୁ ନିଜ ବାପାଙ୍କୁ ଖୁବ୍ ଭକ୍ତି କରନ୍ତି, ଭୟ ବି କରନ୍ତି । ତାଙ୍କ ବାପା ଅତି ସାହସୀ, ବୁଦ୍ଧିମାନ ଓ ଶକ୍ତିଶାଳୀ ବୋଲି ସେ ମନେ କରନ୍ତି । ସେ କହନ୍ତି ଯେ ତାଙ୍କ ବାପା ବେଳେ ବେଳେ ରାଗି ଯାନ୍ତି, ସୁଦ୍ଧା ଚାକରଙ୍କୁ ଗାଳିଗୁଲଜ କରନ୍ତି । ଏହା ଦେଖି ସେ ଭୟରେ ଥରହର ହୁଅନ୍ତି । ରାଗ ସତ୍ତ୍ୱେ ତାଙ୍କ ବାପା ମଝିରେ ମଝିରେ ମଜଲିଆ କଥା କହି ସମସ୍ତଙ୍କୁ ହସାନ୍ତି । ସଭିଙ୍କୁ ସଂଯତ କରି ରଖନ୍ତି ।

## ବାପାଙ୍କଠାରୁ ମାଡ଼

ଜବାହରଲାଲଙ୍କୁ ସେତେବେଳେ ମାତ୍ର ୬ । ୭ ବର୍ଷ ବୟସ ସେତେବେଳେ ସେ ଗୋଟିଏ ଦୁଷ୍ଟିଆ ଦୁଷ୍କର୍ମ କରି ବାପାଙ୍କଠାରୁ ମାଡ ଖାଇଲେ । ଦିନେ ହୋଇଛି କ'ଣ ନା, ସେ ଦେଖିଲେ ବାପାଙ୍କ ଟେବୁଲ ଉପରେ ଦୁଇଟି ଫାଉଣ୍ଟେନ ପେନ୍ ଥୁଆ ହୋଇଛି । ତାଙ୍କର ଲୋଭ ହେଲା ସେଥିରୁ ଗୋଟିଏ ଲୁଚାଇ ନେଇଗଲେ । ତା'ପରର ଘଟଣା ସେ ନିଜେ ଲେଖି ଯାଇଛନ୍ତି— ମୁଁ ଭାବିଲି, ବାପାଙ୍କର ଦୁଇଟା କଲମ କ'ଣ ହେବ ? ଗୋଟାଏ ନେଇଗଲେ ମୁଁ ଲେଖିବି । ବାପା ଆସି ଦେଖିଲେ କଲମ ଗୋଟାଏ ନାହିଁ । ଖୁବ ବିଗିଡ଼ିଗଲେ । ଘରେ ଜୋରସୋର ଖୋଜା ଖୋଜି ଚାଲିଲା । ମୋତେ ପଚରା ଗଲା । ମୁଁ ମାନିଲି ନାହିଁ । ଭୟରେ ମୋର ଛାତି ଥରିଲା । କିନ୍ତୁ ଶେଷରେ ଦୋଷ ଧରା ପଡ଼ିଲା । ମୁଁ ଚୋର ବୋଲି ରଟନା କରାଗଲା । ମୁଁ ନିସ୍ତୁକ ମାଡ ଖାଇଲି । ଦେହ ହାତ ଖଣ୍ଡିଆ ହୋଇ ଗଲା । ବହୁଦିନଯାଏ ମଲମ ଲଗାଇ ଭଲ ହେଲି ! ବାପାଙ୍କଠୁଁ ମାଡ଼ ଖାଇ ସେ ତାଙ୍କ ଉପରେ ରାଗି ନ ଥିଲେ ସତ, ମାଡ ଟିକିଏ ଅଧିକ ହୋଇଗଲା ବୋଲି ଅନୁଭବ କରିଥିଲେ । କିନ୍ତୁ ଏ ଦଣ୍ଡ ଠିକ୍ ଥିଲା ବୋଲି ମଧ୍ୟ ବୁଝି ପାରିଥିଲେ । ମା'ଙ୍କ ପ୍ରତି ତାଙ୍କର ସେପରି ଭୟ ନ ଥିଲା । ମା ତାଙ୍କର କୌଣସି ଦୋଷ ଧରୁ ନ ଥିଲେ ବୋଲି ସେ ପ୍ରକାଶ କରିଛନ୍ତି ।

ଜବାହରଲାଲଙ୍କର ଆଉ ଜଣେ ବିଶ୍ୱସ୍ତ ବନ୍ଧୁ ଥିଲେ । ତାଙ୍କ ନାମ ହେଉଛି ମୁନ୍ସି ମୁବାରକ ଅଲି । ତାଙ୍କ ପିତାଙ୍କର ସେ 'ମୁନ୍ସି' ଥିଲେ । ୧୮୫୭ ମସିହାର ସିପାହୀ ବିଦ୍ରୋହରେ ମୁନ୍ସିଙ୍କର ସର୍ବନାଶ ହୋଇଯାଇଥିଲା । ଇଂରେଜ ସୈନ୍ୟମାନେ ତାଙ୍କର ବଂଶକୁ ପ୍ରାୟ ଧ୍ୱଂସ କରିଦେଇଥିଲେ । ବହୁ ଦୁଃଖ ଭୋଗ କରି ମୁନ୍ସି ଅତ୍ୟନ୍ତ ଧୀର, ଭଦ୍ର ଓ କ୍ଷମାଶୀଳ ହୋଇଥିଲେ । ସେ ଦେଖିବାକୁ ଖୁବ୍ ସୁନ୍ଦର, ଅନେକ ମଜା ଗପ କହନ୍ତି । ନେହରୁ ବହୁ ସମୟ ତାଙ୍କ ପାଖରେ ବସି ଗପ ଶୁଣନ୍ତି । ଆରବ ଦେଶର କାହାଣୀ, ସିପାହୀ ବିଦ୍ରୋହ ଆଦି ଅନେକ ଗପ ସେ କହନ୍ତି । ମୁନସିଜୀ ସର୍ବଦିନପାଇଁ ସଂସାରରୁ ବିଦାୟ ନେଲାପରେ ନେହରୁ ଗମ୍ଭୀର ଶୋକାଭିଭୂତ ହୋଇ ପଡ଼ିଥିଲେ ।



ପିଲାଦିନେ ଚାଚା ନେହରୁଙ୍କ ମା ଓ ଖୁଡ଼ୀ ତାଙ୍କୁ ରାମାୟଣ, ମହାଭାରତ ଆଦି ପୁରାଣ କାହାଣୀ ଶୁଣାଉ ଥିଲେ । ଧର୍ମ ବିଷୟରେ ତାଙ୍କର ସେପରି ସ୍ପଷ୍ଟ ଧାରଣା ନ ଥିଲା । ଧର୍ମ ପାଳନ ଓ ଅନୁସରଣ ନାରୀ ଜାତିର କାମ ବୋଲି ତାଙ୍କର ମନେ ହେଉଥିଲା । ତାଙ୍କ ବାପା ଓ ଅନ୍ୟ ପୁରୁଷ-ମାନେ ମଧ୍ୟ ପୂଜା ଓ ପର୍ବ ପର୍ବାଣୀ ପ୍ରତି ସେପରି ଗୁରୁତ୍ୱ ଦେଉ ନ ଥିଲେ । ଜବାହରଲାଲ ପୂଜାପର୍ବ ବ୍ୟାପାରକୁ ମଉଜରେ ଗ୍ରହଣ କରୁଥିଲେ । ପିଲାବେଳେ ମା'ଙ୍କ ସହିତ ଏଲାହାବାଦରେ ଗଙ୍ଗାରେ ବୁଡ଼ ମଧ୍ୟ ପକାଉଥିଲେ ।

ହୋଲି, ଦୀପାବଳୀ, ଦଶହରା, ଜନ୍ମାଷ୍ଟମୀ ଭଳି ଉତ୍ସବରେ ଯୋଗ ଦେଇ ସେ ଆନନ୍ଦ ଅନୁଭବ କରୁଥିଲେ । ମହରମ ତାଜିଆ ଦେଖିବାକୁ ତାଙ୍କୁ ଖୁବ ଭଲ ଲାଗୁଥିଲା । ମହରମ ହେଉଛି ମୁସଲମାନ ଭାଇମାନଙ୍କର ଗୋଟିଏ ବଡ ପର୍ବ ।

ଚାଚାଙ୍କ ଜନ୍ମଦିନ

ଚାଚା ନେହରୁଙ୍କ ଜୀବନରେ ସବୁଠାରୁ ଆନନ୍ଦ ଉତ୍ସବର ଦିନ ଥିଲା ତାଙ୍କ ନିଜ ଜନ୍ମଦିନ । ସେ ଦିନ ସକାଳେ ତାଙ୍କୁ ଓଜନ କରାଯାଉଥିଲା । ତାଙ୍କ ଓଜନର ଗହମ ଓ ଅନ୍ୟାନ୍ୟ ଜିନିଷ ଗରିବଲୋକଙ୍କ ଭିତରେ ବଣ୍ଟାଯାଉଥିଲା । ତାହାପରେ ଚାଚା ନୂଆ ପୋଷାକ ପିନ୍ଧୁଥିଲେ । କେତେ ଲୋକ ଆସି ତାଙ୍କୁ କେତେ ଉପହାର ଦେଇ ଯାଉଥିଲେ । ଶେଷରେ ଗୋଟାଏ ବଡ଼ ଭୋଜି ହେଉଥିଲା । ଚାଚା ଭାବୁଥିଲେ, "ମୋ ଜନ୍ମଦିନଟା ବର୍ଷକୁ ଥରେ କାହିଁକି ହେଉଛି ? ଆଉ କେତେ ଥର ହେବା ଉଚିତ ।" କିନ୍ତୁ ବଡ ହେଲାପରେ ସେ ଦୁଃଖକରି କହୁଛନ୍ତି ଯେ ଜନ୍ମଦିନରେ କିଛି ମଜା ନାହିଁ । ମଣିଷ କମେ କମେ ବୁଢ଼ା ହୋଇ ଯାଉଛି ବୋଲି ଜନ୍ମଦିନ ତାକୁ ଜଣାଇ ଦେଉଛି ।

ଚାଚା ଜନ୍ମ ହୋଇଥିଲେ ୧୮୮୯ ଖ୍ରୀଷ୍ଟାବ୍ଦ ନଭେମ୍ବର ୧୪ ତାରିଖରେ । ଏ ବର୍ଷ ତାଙ୍କର ବୟସ ହୋଇଥାନ୍ତା ୮୬ ପୂରି ୮୭ । ସେ ଆମ ଭିତରୁ ଚାଲି ଯାଇଛନ୍ତି । କିନ୍ତୁ ତାଙ୍କର ନାମ ତାଙ୍କୁ ଅମର କରି ରଖିଛି । ଭାରତ ଯେତେ ଦିନ ଥିବ ତାହାର ଇତିହାସରେ ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ । ମହାତ୍ମାଜୀଙ୍କ ଗାନ୍ଧୀଜୀଙ୍କ ପଟ୍ଟଶିଷ୍ୟ ହିସାବରେ, ଭାରତ ସ୍ୱାଧୀନତା ଆନ୍ଦୋଳନର ଅଗ୍ରଗଣ୍ୟ ନେତା ହିସାବରେ, ଦେଶନେତା ହିସାବରେ ଓ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ହିସାବରେ ସବୁଦା ଏ ଦେଶର ପୁରପଲ୍ଲୀବାସୀଙ୍କର, ଏ ଜାତିର ସେ ଚିରନମସ୍ୟ ହୋଇ ରହିଥିବେ ।

ଜବାହରଲାଲ ପିଲାବେଳୁ ଭାରତବର୍ଷର ଦରିଦ୍ର ଅସହାୟ ଲୋକଙ୍କ କଥା ଭାବୁଥିଲେ । ଯୁବକ ହେଲାପରେ ସେ ଗାନ୍ଧୀଜୀଙ୍କ ସମ୍ପର୍କରେ ଆସି ଭାରତର ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବା ଭଳିରେ ସମଗ୍ର ଭାରତବର୍ଷ ବୁଲି ଦେଖିଥିଲେ । ଭାରତବର୍ଷ ସମ୍ପର୍କରେ ତାଙ୍କର ଅଭିଜ୍ଞତା ଓ ଅନୁଭବ ସେ ତାଙ୍କର ବିଶ୍ୱବିଖ୍ୟାତ ଗ୍ରନ୍ଥ-"ଡିସ୍‌କଭରି ଅଫ୍ ଇଣ୍ଡିଆ" ନାମକ ଗ୍ରନ୍ଥରେ ଲେଖି-ଛନ୍ତି । "ଏ ବହିଟି ପୃଥିବୀର ବହୁଭାଷାରେ ଅନୁଦିତ ହୋଇ ଲକ୍ଷ ଲକ୍ଷ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିଛି । ଆମ ଓଡ଼ିଆ ଭାଷାରେ ମଧ୍ୟ ଏହା "ଭାରତ ଆବିଷ୍କାର" ନାମରେ ପ୍ରକାଶ ପାଇଛି । ଏହି ବହିରେ ସେ ଭାରତବର୍ଷ କ'ଣ ତାହା ଜନପ୍ରକୃତିକୁ ଅତି ସୁନ୍ଦର ଭାବେ ଲେଖିଛନ୍ତି । ଭାରତବର୍ଷର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସମ୍ପର୍କରେ ସେ ଖୁବ୍ ଆସ୍ଥା ଓ ଆଶାଜନକ ବାଣୀ ପ୍ରକାଶ କରିଛନ୍ତି । ଭାରତର ସାହିତ୍ୟ, ସଂସ୍କୃତି, ବିଜ୍ଞାନ, ଦର୍ଶନ, ପୁରାଣ ଓ ଇତିହାସକୁ ସେ ଭୂରି ଭୂରି ପ୍ରଶଂସା କରିଛନ୍ତି । ସେ କହୁଛନ୍ତି ସେ ଲେଖିଛନ୍ତି—ଭାରତବର୍ଷର ପ୍ରତ୍ୟେକ ବ୍ୟକ୍ତି ଏକ ମହାନ୍ ଆତ୍ମିକ ଓ ନୈତିକ ସମ୍ପଦର ଅଧିକାରୀ । ଦାରିଦ୍ର୍ୟ ଆମର ପ୍ରଧାନ ପ୍ରତିବନ୍ଧକ । ଏହି ଦାରିଦ୍ର୍ୟକୁ ଦୂର କରିଦେଲେ ଭାରତବର୍ଷ ପୃଥିବୀରେ ସର୍ବଶ୍ରେଷ୍ଠ ଦେଶ ବୋଲି ଗଣ୍ୟ ହେବ । ମାତ୍ର ଏ ଦାରିଦ୍ର୍ୟ ଦୂର ହେବ କିପରି ? ନେହରୁ କହୁଛନ୍ତି ଏକ ଗଣତାନ୍ତ୍ରିକ ସମାଜବାଦୀ ଧାରାରେ ଦେଶ-ବାସୀ ଯଦି ଜାଗ୍ରତ ଓ କର୍ମଠ ହୋଇ ଉଠନ୍ତି—ତେବେ ଏ ଦେଶ ଖୁବ୍ ଶୀଘ୍ର ପ୍ରଗତି ପଥରେ ଅଗ୍ରସର ହେବ ।

ଆଜି ତାଙ୍କର ସୁଯୋଗ୍ୟା କନ୍ୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଆମ ଦେଶର ପ୍ରଧାନମନ୍ତ୍ରୀ ଆସନ ଅଳଙ୍କୃତ କରିଛନ୍ତି । ସେ ହେଉଛନ୍ତି—ଜବାହରଲାଲଙ୍କର ଏକମାତ୍ର କନ୍ୟା । ଇନ୍ଦିରାଜୀ ସୁଯୋଗ୍ୟ ପିତାଙ୍କର ସୁଯୋଗ୍ୟା କନ୍ୟା । ପିଲାଦିନୁ ସେ ଥିଲେ ମାତୃହୀନା । କାରଣ ଜବାହରଲାଲ

ଅଳ୍ପ ବୟସରେ ନିଜ ପତ୍ନୀ କମଳାଦେବୀଙ୍କୁ ହରାଇଥିଲେ । ଜବାହରଲାଲଙ୍କ ଜୀବନର ଅନେକ ବର୍ଷ ଇଂରେଜ ସରକାରଙ୍କ ସଙ୍ଗେ ଲଢି ଜେଲ୍‌ରେ କଟିଛି । ସେହି ଜେଲ୍‌ରେ ଥିବାବେଳେ ସେ ବହୁ ସୁନ୍ଦର ଜ୍ଞାନଗର୍ଭକ ଚିଠି ନିଜର ଏକମାତ୍ର ମାଆଛେଉଣ୍ଡ ଅଲିଅଳି କନ୍ୟା ଇନ୍ଦିରାଙ୍କ ପାଖକୁ ଲେଖିଥିଲେ । ସେ ଚିଠିଗୁଡ଼ିକର ବିଷୟବସ୍ତୁ ଥିଲା ବିଶ୍ୱର ଇତିହାସ । କିପରି ମନୁଷ୍ୟ ସଭ୍ୟତା ଓ ସଂସ୍କୃତି ପଥରେ ଆଗେଇ ଚାଲିଛି—ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇଛି—ପୁଣି ଅଗ୍ରସର ହୋଇ ଚାଲିଛି—ତାର ଯୁଗ ଯୁଗ ଓ ଦେଶ ଦେଶର ବିବରଣୀ । ସେହି ଚିଠିଗୁଡ଼ିକ ଉପରେ ଗଢ଼ିଉଠିଛି ନେହରୁଙ୍କ ଆଉ ଏକ ବିଶ୍ୱବିଖ୍ୟାତ ଗ୍ରନ୍ଥ—"ଗ୍ଲିମ୍ପସେସ୍ ଅଫ୍ ଦ ୱାର୍ଲ୍ଡ ହିଷ୍ଟ୍ରି" । ତାହା ମଧ୍ୟ ଆମ ଓଡ଼ିଆରେ ଅନୂଦିତ ହୋଇ ପ୍ରକାଶପାଇଛି "ବିଶ୍ୱ ଇତିହାସ" ନାମରେ । ନେହରୁଙ୍କ ଜୀବନର ଯେଉଁ ସ୍ୱପ୍ନ ଥିଲା ତାକୁ ପୂରଣ କରିବାର ଦାୟିତ୍ୱ ବର୍ତ୍ତମାନ ପଡ଼ିଛି ତାଙ୍କର କନ୍ୟା ଇନ୍ଦିରାଙ୍କ ଉପରେ । ଇନ୍ଦିରା ଦେଶରୁ ଦାରିଦ୍ର୍ୟ ଘୁଞ୍ଚାଇବା ଲାଗି ବଦ୍ଧପରିକର ହୋଇଛନ୍ତି । ସେ ଡାକ ଦେଇଛନ୍ତି—"ଗରିବୀ ହଟାଓ" । ପିଲାଦିନୁ ଇନ୍ଦିରା ନିଜ ମାଆଙ୍କୁ ହରାଇ ବେଶି ଦିନ ମାତୃ ସ୍ନେହ ଭୋଗ କରି ପାରିନାହାନ୍ତି । କିନ୍ତୁ ଆଜି ଭାରତବର୍ଷର କୋଟି କୋଟି ଦରିଦ୍ର ଜନତା ତାଙ୍କଠାରୁ ମାତୃସ୍ନେହ ଆଶା କରୁଛନ୍ତି । ଜବାହରଲାଲ ଯେଉଁ କାର୍ଯ୍ୟଟିକୁ ଅଧାରଉ ଏ ପୃଥିବୀରୁ ବିଦାୟ ନେଇ ଯାଇଛନ୍ତି—ତାଙ୍କର ସୁଯୋଗ୍ୟା କନ୍ୟା ସେତକ ନିଶ୍ଚୟ ପୂରଣ କରିବେ ବୋଲି ଭାରତବାସୀ ଆଶା କରନ୍ତି ।

## ଔଷଧ ତଥା ସୁଗନ୍ଧଯୁକ୍ତ ବୃକ୍ଷରୋପଣ ଏବଂ ଶିଳ୍ପ ବିକାଶ ଦିଗରେ ଭୁବନେଶ୍ୱର ଆଞ୍ଚଳିକ ଗବେଷଣାଗାରର ଭୂମିକା

ଗତ ୧୯୭୫ ସେପ୍ଟେମ୍ବର ୨୬ ତାରିଖ ଦିନ ଭୁବନେଶ୍ୱର ଆଞ୍ଚଳିକ ଗବେଷଣାଗାର ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିବା ଏକ ସମାବେଶ ଓଡ଼ିଶାର କୃଷି ଓ ସମବାୟ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭାଗୀରଥି ଗମାଙ୍ଗୋ ଉଦ୍‌ଘାଟନ କରିଥିଲେ । "ରାଜ୍ୟରେ ଔଷଧ ତଥା ସୁଗନ୍ଧଯୁକ୍ତ ବୃକ୍ଷ ରୋପଣ ଏବଂ ଆନୁଷଙ୍ଗିକ ଶିଳ୍ପ ବିକାଶ" ସମ୍ପର୍କରେ ମୁଖ୍ୟତଃ ଏହି ସମାବେଶରେ ଆଲୋଚନା କରାଯାଇଥିଲା ।

ପୃଥିବୀର ଅନ୍ୟାନ୍ୟ ବିକାଶଶୀଳ ଦେଶରେ ଔଷଧ ତଥା ସୁଗନ୍ଧଯୁକ୍ତ ବୃକ୍ଷରୋପଣ ବିଶେଷ ଲୋକପ୍ରିୟତା ହାସଲ କରିଛି । ଭାରତ ଏବଂ ଭାରତ ବାହାରେ ଥିବା ଅନ୍ୟ କେତେକ ଦେଶରେ ଏହି ବୃକ୍ଷ ରୋପଣ କାର୍ଯ୍ୟ ସନ୍ତୋଷଜନକ ଭାବେ ବୃଦ୍ଧି ପାଇବାରେ ଲାଗିଛି । ଭାରତୀୟ ଔଷଧ ବୃକ୍ଷ ବିଶେଷଜ୍ଞମାନଙ୍କ ବିବରଣୀରୁ ଜଣାଯାଏ ଯେ ୧୯୭୩-୭୪ ମଧ୍ୟରେ ଔଷଧ ବୃକ୍ଷ ବାବଦରୁ ୭.୭ କୋଟି ଟଙ୍କା ମିଳିଥିବା ସ୍ଥଳେ ୧୯୭୪-୭୫ ରେ ତାହା ୧୪.୫୪ କୋଟି ଟଙ୍କାକୁ ବୃଦ୍ଧି ପାଇଥିଲା । ପୂର୍ବାଞ୍ଚଳ ଦେଶମାନଙ୍କରେ ଜଳବାୟୁ ତଥା ଭୌଗୋଳିକ ଅବସ୍ଥିତି, ବିଭିନ୍ନ ଧରଣର ମସଲା ଜାତୀୟ ବୃକ୍ଷର ପ୍ରସାର ପାଇଁ ଅନୁକୂଳ ହୋଇଥିବା ଯୋଗୁଁ ଯେଉଁ ଦେଶରେ ଏଭଳି ଔଷଧ ତଥା ସୁଗନ୍ଧଯୁକ୍ତ ବୃକ୍ଷରୋପଣ କରାଗଲେ, ତାହା ବିଶେଷଭାବେ ବୃଦ୍ଧି ପାଇବ । ଔଷଧ ତଥା ସୁଗନ୍ଧଯୁକ୍ତ ବୃକ୍ଷ ରୋପଣ କିଭଳି ଭାବେ ଆରମ୍ଭ କରାଯିବ, ଆମ ରାଜ୍ୟରେ କେଉଁ ପ୍ରକାରର ଔଷଧ ପ୍ରସ୍ତୁତ, ସୁଗନ୍ଧଯୁକ୍ତ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ଶିଳ୍ପ କାରଖାନା ସ୍ଥାପନ କରାଯାଇ ପାରିବ, ସେ ସମ୍ବନ୍ଧରେ ଗବେଷଣା ସଂସ୍ଥା ଓ ଶିଳ୍ପାନୁଷ୍ଠାନର ବିଶେଷଜ୍ଞମାନଙ୍କ ସହିତ ଆଲୋଚନା କରିବା ଏହି ସମାବେଶର ପ୍ରଧାନ ଲକ୍ଷ୍ୟଥିଲା ।

ପୂର୍ବାଞ୍ଚଳ ଦେଶଗୁଡ଼ିକର ପ୍ରାକୃତିକ ସମ୍ପଦକୁ ଉପଯୋଗ କରିବା ନିମନ୍ତେ ଭୁବନେଶ୍ୱର ଆଞ୍ଚଳିକ ଗବେଷଣାଗାର ବିଶେଷ ଧ୍ୟାନ ଦେଇଛନ୍ତି । ଉତ୍କୃଷ୍ଟ ଧରଣର ଔଷଧ ତଥା ସୁଗନ୍ଧଯୁକ୍ତ ବୃକ୍ଷ ରୋପଣ କାର୍ଯ୍ୟ ପରୀକ୍ଷାମୂଳକ ଭାବେ ହାତକୁ ନିଆଯାଇଛି । ଔଷଧ ତଥା ସୁଗନ୍ଧଯୁକ୍ତ ବୃକ୍ଷରୋପଣ କରିବା ନିମନ୍ତେ ନୂତନ ଶିଳ୍ପୋଦ୍ୟୋଗୀମାନଙ୍କୁ ବୈଷୟିକ ଜ୍ଞାନ ତଥା ସେ ସମ୍ବନ୍ଧରେ ଅନ୍ୟାନ୍ୟ ତଥ୍ୟ ସମେତ ଆନୁଷଙ୍ଗିକ ଯନ୍ତ୍ରପାତି ଯୋଗାଇ ଦେବା ପାଇଁ ବ୍ୟବସ୍ଥା କରାଯାଇଛି ।



ଏ ଶୁଭ ସକାଳେ ସଖା ! ବାଜୁଛି
ଶଂଖ ଘନ ଘନ
କହୁଛନ୍ତି, "ଭାରତର ହେ ଅମୃତ
ପୁତ୍ରକନ୍ୟା ଗଣ,
ମଠ ମଠ କର ନାହିଁ ଆଉ
ହାତ ଟେକ କର ନମସ୍କାର
ଉଠହାଏ ବସାଇଛୁ ଏ ମାଟିରେ
ଭାର ଦରବାର" ।।

ଶାନ୍ତିର ଯେ ପୂର୍ଣ୍ଣପୁର ବସୁନ୍ଧର—
ଧର୍ମକଳସ୍କୁ ବୋଲୁ
ଶୁଭଯାତ୍ରା ଗାଉଛନ୍ତି ଲକ୍ଷଲୋକ
ଏ ମାଟିର ଉତ୍ସ—
ଯେତେ ସାହା ଅଜାତ କଳଙ୍କ
ହତାଶାର ଶତ ସୃଷ୍ଟି ଘୋର,
ଏ ଭାରତ ଭୂମି ହେବ ମୈତ୍ରୀ ବ୍ରତେ
ଅଶୋକ ନଗର ।।

ଶ୍ରୀ ନରସିଂହ ମିଶ୍ର

# ଅନୁଶାସନ ପର୍ବ

ମମତାର ମଲ୍ଲି ନାଚେ ପକ୍ଷୀ ଭୃକୁ
ଛୁଟିବ ମହକ
ଧନକର ଲୋଭପାଣେ ରକ୍ତ ସୁର
ନ ବାଢ଼ିବ ସାକା,
କୃଷକର ହାଡ ମାଂସ ଦଳି
ନ ଫୁଟିବ ଭଙ୍ଗର ଗୋଲାପ
ଆଉ କେହୁ ଶୁଣିବେନି ପ୍ରେମ ନାମେ
ପାପର ପ୍ରଳାପ ।।

ଭ୍ରମିତ ଭଣିତ ନେତା ଏ ଦେଶର
ମୂଳକ ମୂଳତ ;
ସିଂଧ ସେଇଠାରେ ଅଛି, ଶୁଣ ବନ୍ଧୁ,
ଶୁଣ ବାଦ ପାଦ ;
ସ୍ୱେଚ୍ଛାଚାର ଭଲ୍ ଲାଗିଲ୍ଲା ଯବେ
ହବେ ନବେ ଧର୍ମ ଧ୍ୱଜାଧାରୀ
"ଅନୁଶାସନର ମନ୍ତ୍ର" ଏ ଦେଶରେ
ଶୃଙ୍ଖଳାଶୀ ସର ॥
ଏ' ଦେଶର ସବୁ ବାଦ ମିଶୁ ଏକ ବାଦେ
"ସବୁ ଧର୍ମ ମହିତ ସମାନ"
ଏ ସଂସ୍କୃତି ଶୀଳାଦ୍ରିର, ବିଶ୍ୱର ସଂସ୍କୃତି
ଯୁଗେ ଯୁଗେ ବଞ୍ଚି ମହାନ ।
ଅଗାଧର ଅନ୍ଧକାର ଯୁଗ
କାଟିବାକୁ ବଳବା ସ୍ୱାସ୍ଥ୍ୟ,
ଭେଟିବାକୁ ଏ ଜାତିର ହୃଦୟ
ଶାନ୍ତି ପ୍ରୀତି ଅନେକ ଅଧ୍ୟାସ ।

—o—





# ଓଡ଼ିଶା ପାଇଁ ଏକ ସୁବ୍ୟବସ୍ଥିତ ବନ୍ୟାନିୟନ୍ତ୍ରଣ ପରିକଳ୍ପନା

ଶ୍ରୀ ଭି. ଏସ୍. ମାଥ୍ୟୁସ, ଆଇ. ଏ. ଏସ୍.
ମୁଖ୍ୟ ଶାସନ ସଚିବ, ଓଡ଼ିଶା ।

## ବର୍ତ୍ତମାନର ପରିସ୍ଥିତି

ଓଡ଼ିଶା ହେଉଛି ଏକଲା ଏକ ରାଜ୍ୟ ଯେଉଁଠି ପରସ୍ପର ବିରୋଧୀ ବହୁ ଘଟଣା ଦୃଷ୍ଟିଗୋଚର ହୋଇଥାଏ । ଏହି ରାଜ୍ୟରେ ହିଁ ଦେଖିବାକୁ ମିଳେ ଉପଯୋଗ ହୋଇ ନପାରି ଗଚ୍ଛିତ ଥିବା ବହୁଳ ପ୍ରାକୃତିକ ସମ୍ପଦ ସଙ୍ଗେ ଦାରୁଣ ଦାରିଦ୍ର୍ୟ ଏବଂ ଗୁରୁତର ମରୁଡ଼ି ମଧ୍ୟରେ ପ୍ରଳୟଙ୍କରୀ ବନ୍ୟାର ବିଭୀଷିକା ।

ଚଳିତବର୍ଷ ରାଜ୍ୟର ପଶ୍ଚିମାଞ୍ଚଳ ଜିଲ୍ଲାଗୁଡ଼ିକ ଅନାବୃଷ୍ଟିରେ ମରୁଡ଼ିଗ୍ରସ୍ତ ହୋଇପଡ଼ିଛି। ଧାନ କ୍ଷେତ ଓ ଫସଲ ପ୍ରଖର ସୂର୍ଯ୍ୟତାପରେ ନଷ୍ଟ ହୋଇଯାଇଛି । କୂଅ, ପୋଖରୀଗୁଡ଼ିକ ଶୁଖିଯାଇଛି । ପାନୀୟ ଜଳ ନମିଳି ଲକ୍ଷ ଲକ୍ଷ ଲୋକ ଶୋଷରେ ଆତୁର ହେଉଥିବାବେଳେ ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକରେ ଯେଉଁ ଅଭୂତପୂର୍ବ ପ୍ରଳୟଙ୍କରୀ ବନ୍ୟା ଘଟିଗଲା, ତାହା ମାନସପଟରେ ଚିରସ୍ମରଣୀୟ ହୋଇ ରହିବ । ଉପକୂଳବର୍ତ୍ତୀ ନଦୀଗୁଡ଼ିକରେ ଆକସ୍ମିକ ଭାବେ ପ୍ରବଳ ବନ୍ୟା ଦେଖାଗଲା । ବ୍ରାହ୍ମଣୀ ଓ ବୈତରଣୀ ନଦୀର ଜଳପତନ ପୂର୍ବ ବର୍ଷଗୁଡ଼ିକ ଅପେକ୍ଷା ଅଧିକ ହୋଇ ବନ୍ଧ ଭାଙ୍ଗି ଦେଇଥିଲା ଏବଂ ବନ୍ୟାଜଳ ପ୍ରଚଣ୍ଡ ବେଗରେ ନଦୀକୂଳବର୍ତ୍ତୀ ଗ୍ରାମ ଓ କୃଷି କ୍ଷେତରେ ମାଡ଼ି ଆସିବା ଯୋଗୁଁ ଧ୍ୱଂସର ତାଣ୍ଡବଲୀଳା ସୃଷ୍ଟି ହୋଇଥିଲା । ୭,୦୦୦ରୁ ଊର୍ଦ୍ଧ୍ୱ ଗ୍ରାମରେ ବନ୍ୟାଜଳ ପ୍ରବେଶ କରି ପ୍ରାୟ ୫.୮ ଲକ୍ଷ ହେକ୍ଟର ଜମିକୁ ପ୍ଲାବିତ କରିଥିଲା । ଏହା ଫଳରେ ବହୁ ଫସଲ ନଷ୍ଟ ହେବା ସଙ୍ଗେ ସଙ୍ଗେ ୫୭ ଜଣ ବ୍ୟକ୍ତି ଓ ୯୧୦ ଗୋରୁଗାଈ ମୃତ୍ୟୁ ମୁଖରେ ପଡ଼ିଥିଲେ । ଏହା ବ୍ୟତୀତ, କେତେକ ଗ୍ରାମ ନିଶ୍ଚିହ୍ନ ହୋଇଯାଇଥିଲା । ୩୦,୦୦୦ ବାସଗୃହ ଭାଙ୍ଗିପଡ଼ିବା ସଙ୍ଗେ ସଙ୍ଗେ ୧ ଲକ୍ଷ ବାସଗୃହ ବାସୋପଯୋଗୀ ଅବସ୍ଥାରେ ରହି ନଥିଲା । ହଜାର ହଜାର ବାସହୀନ ପୁରୁଷ, ମହିଳା ଓ ଶିଶୁ ନିଜ ନିଜର ଗ୍ରାମରେ ଆଶ୍ରୟ ନପାଇ ୭ରୁ ୧୦ ଫୁଟ ପାଣି ଭିତରେ ପଶି ନିରାପଦ ସ୍ଥାନକୁ ଚାଲି ଆସିଥିଲେ । ନଦୀଗୁଡ଼ିକର ପ୍ରଳୟଙ୍କରୀ ବନ୍ୟାଯୋଗୁଁ କୌଣସି ନଦୀବନ୍ଧ ନିରାପଦ ନଥିଲା । ଯାହା ହେଉନା କାହିଁକି ଏହିସବୁ ନଦୀବନ୍ଧରେ ମେଘାଚ୍ଛନ୍ନ ଆକାଶ ଓ ବର୍ଷା ମଧ୍ୟରେ ଏହି ନିରାଶ୍ରୟ ଲୋକମାନେ ସରକାରଙ୍କ ତରଫରୁ ଯୋଗାଇ ଦିଆଯାଇଥିବା ଉଲେଇ ତଳେ ବନ୍ୟାଜଳ ଶୁଖିବା ପର୍ଯ୍ୟନ୍ତ ଆଶ୍ରୟ ନେଇ ରହିଥିଲେ । ସେମାନଙ୍କର ନିଜ ନିଜର ବାସଗୃହ ବନ୍ୟା କବଳରୁ ମୁକ୍ତ ହେବାପରେ ସେମାନେ ନିଜ ନିଜ ଘରକୁ ଫେରିଯାଇଥିଲେ ।

ଏବର୍ଷ ବନ୍ୟାରେ ଲୋକମାନେ ଯେଉଁ ଭୀଷଣ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଛନ୍ତି, ତାହା ଅବର୍ଣ୍ଣନୀୟ । ଏହାଦ୍ୱାରା ଓଡ଼ିଶାର ଅର୍ଥନୀତି କ୍ଷେତ୍ରରେ କୋଟି କୋଟି ଟଙ୍କା କ୍ଷତି ଘଟିଛି ବୋଲି ଅନୁମାନ କରାଯାଇଛି । ଲୋକମାନଙ୍କୁ ରିଲିଫ୍ ଦେବା, ଭାଙ୍ଗି ଯାଇଥିବା ରାସ୍ତାଘାଟର ମରାମତି ଓ ଲୋକମାନଙ୍କ ଥଇଥାନ ବାବଦରେ

୨୫ କୋଟିରୁ ଅଧିକ ଟଙ୍କା ଆବଶ୍ୟକ । ମାତ୍ର ସ୍ୱଳ୍ପକାଳୀନ ସ୍ୱଳ୍ପ ଓ ମଧ୍ୟମ ବ୍ୟୟିତ ସବୁ କାମ ହାତକୁ ନେବାପାଇଁ ରାଜ୍ୟର ଆର୍ଥିକ ସମ୍ବଳ ଅତି କମ୍ । ସେତେବେଳେ କେନ୍ଦ୍ର ସରକାରଙ୍କଠାରୁ କିଛି ପରିମାଣରେ ସାହାଯ୍ୟ ଆସି ପହଞ୍ଚେ ସେତେବେଳେ କିଛି ଅଧିକା କାମ ହାତକୁ ନିଆଯାଇଥାଏ । କିନ୍ତୁ ସେ ପର୍ଯ୍ୟନ୍ତ କେବଳ ସମସ୍ତ ଅତଡାବନ୍ଧ ହେବାରେ ଲାଗିଥାଏ ।

ଏହା କିଛି ନୂତନ ଘଟଣା ନୁହେଁ । ବିଗତ କେତେ ବର୍ଷ ଧରି ଓଡ଼ିଶାରେ ମରୁଡ଼ି ଓ ବନ୍ୟା କ୍ରମାଗତ ଭାବେ ଦେଖାଦେଉଛି ଏବଂ ତଦ୍ଦ୍ୱାରା ଯେଉଁ କ୍ଷୟକ୍ଷତି ଘଟୁଛି, ତାହାର ପରିମାଣ ବହୁ ଅଧିକ । ବନ୍ୟା ନିୟନ୍ତ୍ରଣ ନିମନ୍ତେ ଏକ ସମନ୍ୱିତ ଯୋଜନାପାଇଁ ଯେଉଁ ପରିମାଣର ଅର୍ଥ ଆବଶ୍ୟକ, ତାହାଠାରୁ ମଧ୍ୟ ଅଧିକ । କିଛି ବର୍ଷ ଆଗରୁ ମହାନଦୀ ଭଳି ଏକ ବଡ଼ ନଦୀରେ ହୀରାକୁଦ ବନ୍ଧ କରାଯାଇଥିବା ଯୋଗୁଁ ତ୍ରିକୋଣଭୂମି ଅଞ୍ଚଳରେ ବାସ କରୁଥିବା ଲୋକମାନେ ବନ୍ୟା କବଳରୁ ରକ୍ଷା ପାଇଛନ୍ତି । ଅନ୍ୟଥା, ଏବର୍ଷ ସେପ୍ଟେମ୍ବରରେ ବନ୍ୟା ଦେଖାଦେଲା ତାହା ଅତ୍ୟନ୍ତ ଅଧିକ ପ୍ରଳୟଙ୍କରୀ ହୋଇଥାନ୍ତା । ଅଥଚ ଅନେକ ନଦୀ ରହିଛି, ଯେଉଁଥିରେ କି ହୀରାକୁଦ ଭଳି ଆଣିକଟ କରାଯାଇ ଲୋକମାନଙ୍କୁ ବନ୍ୟା ବିପତ୍ତିରୁ ରକ୍ଷା କରାଯାଇ ପାରନ୍ତା ।

## ସୁବ୍ୟବସ୍ଥିତ ବନ୍ୟାନିୟନ୍ତ୍ରଣର ଆବଶ୍ୟକତା

ଏକ ବଳିଷ୍ଠ ଓ ଗତିଶୀଳ ବନ୍ୟା ନିୟନ୍ତ୍ରଣ କାର୍ଯ୍ୟକ୍ରମପାଇଁ ଓଡ଼ିଶାରେ ବର୍ତ୍ତମାନ ଭୂ-ପ୍ରାକୃତିକ, ଇଞ୍ଜିନିୟରିଂ, ସାମାଜିକ, ଅର୍ଥନୈତିକ ଓ ପ୍ରଶାସନିକ ବ୍ୟବସ୍ଥା ମଧ୍ୟରେ ସମନ୍ୱୟ ରକ୍ଷାକରି ଏହି କାର୍ଯ୍ୟକ୍ରମକୁ ସୁନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ କାର୍ଯ୍ୟକାରୀ କରାଯିବା ଉଚିତ । ବନ୍ୟାବିପନ୍ନ ଅଞ୍ଚଳରେ ବାସ କରୁଥିବା ଲୋକମାନଙ୍କପାଇଁ ଏଭଳି ଯୋଜନା କାର୍ଯ୍ୟକାରୀ ହେବା ଉଚିତ ଯେପରିକି ସେମାନେ ଅତ୍ୟଧିକ ବନ୍ୟା ପ୍ରକୋପରୁ ରକ୍ଷାପାଇ ସ୍ୱଚ୍ଛନ୍ଦରେ କାଳାତିପାତ କରିପାରିବେ ।

ବନ୍ୟା ନିୟନ୍ତ୍ରଣପାଇଁ ଯଥେଷ୍ଟ ସଂଖ୍ୟାରେ ଜଳଭଣ୍ଡାରର ଅଭାବ । କେଉଁଠାରେ ଯୋଜନା କରାଯାଇ ବା କେଉଁଠାରେ ଯୋଜନା କରାନଯାଇ ଅଧାପନ୍ତରିଆ ଭାବେ ନଦୀବନ୍ଧ ନିର୍ମାଣ, ପଙ୍କ, ଗୋଡି ନିଷ୍କାସନ କରିବା ନିମନ୍ତେ ଆନୁଷଙ୍ଗିକ ବ୍ୟବସ୍ଥାର ଅଭାବ, ନଦୀର ଗତିକୁ ସ୍ଥିର ରଖିବା, ନାଳ ଓ ଉପନାଳଗୁଡ଼ିକର ଯତ୍ନ ନ ନେବା, ମାଟିବନ୍ଧ ନିର୍ମାଣ କରିବା ପ୍ରଭୃତି ସବୁ ଏଭଳି ଗତିରେ ଚାଲୁ ରଖାଯାଏ, ତେବେ ଓଡ଼ିଶାର ବନ୍ୟା ପରିସ୍ଥିତିରେ କୌଣସି ଉନ୍ନତି ଦେଖାଦେବ ନାହିଁ । ବନ୍ୟା ସମ୍ବନ୍ଧରେ ଭବିଷ୍ୟତବାଣୀ ତଥା ସତର୍କବାଣୀ ଶୁଣାଇବା ଏବଂ ଏ ସମ୍ବନ୍ଧରେ ଚିନ୍ତାଧାରା ତଥା ମତଗତ ପରିବର୍ତ୍ତନ କରିବାଦ୍ୱାରା ପ୍ରକୃତ କାର୍ଯ୍ୟ କରିବା ସମ୍ଭବପର ହେଉନାହିଁ ।

## ଓଡ଼ିଶାପାଇଁ ଏକ ପରିକଳ୍ପନା

ବନ୍ୟା ନିୟନ୍ତ୍ରଣ ନିମନ୍ତେ ଅତୀତର ନୀତି ଓ କାରିଗରୀ କୌଶଳକୁ ବର୍ତ୍ତମାନ ମିଶାଇ ଏଥି ନିମନ୍ତେ ନୂତନ ଚିନ୍ତାଧାରା କରାଯିବା ଉଚିତ । ଉଦାହରଣ ସ୍ୱରୂପ, ବନ୍ୟା ବିପତ୍ତିକୁ ହ୍ରାସ କରିବା ନିମନ୍ତେ ଯେଉଁ ନଦୀବାନ୍ଧ ନିର୍ମାଣ କରାଯାଇଛି, ସେଥି ନିମନ୍ତେ ଆନୁଷଙ୍ଗିକ କାର୍ଯ୍ୟ ସମ୍ପାଦନ କରାଯାଉନାହିଁ । ଅର୍ଥାତ୍ ନଦୀବାନ୍ଧଗୁଡ଼ିକରେ ମାଟି ପକାଇବା, ପଙ୍କୋଦ୍ଧାରପାଇଁ ବ୍ୟବସ୍ଥା କରିବା, ନାଳଗୁଡ଼ିକର ପୁନରୁଦ୍ଧାର କରିବା ଓ ସେଥି ନିମନ୍ତେ ସାମାଜିକ ତଥା ପ୍ରଶାସନିକ ଅଭିମୁଖ୍ୟ ପରିବର୍ତ୍ତନ ନକରିବା ଯୋଗୁଁ ନଦୀବାନ୍ଧଗୁଡ଼ିକ କ୍ରମଶଃ ବିପଦସଙ୍କୁଳ ହେଉଛି ଓ ଅଧିକାଂଶ ସମୟରେ ତାହା ଭାଙ୍ଗିରୁଜି ଯାଉଛି । କଲୋରାଡୋ ରାଜ୍ୟ ବିଶ୍ୱବିଦ୍ୟାଳୟର ଜଳବିଜ୍ଞାନ ପ୍ରଫେସର ଭୁକନା ସ୍ୱେଭ୍ କେଲିଭଙ୍କ ମତାନୁସାରେ ବନ୍ୟା ନିୟନ୍ତ୍ରଣ ବ୍ୟବସ୍ଥାକୁ ୫ ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଲା ପ୍ରତିରୋଧ, ସୁରକ୍ଷା, ପରୀକ୍ଷା, ପ୍ରାକୃତିକ ନିୟନ୍ତ୍ରଣ ଓ ଶମନ । ଏହିସବୁ ତତ୍ତ୍ୱଗୁଡ଼ିକୁ ଯଥାଯଥଭାବେ ଏକତ୍ରିତକରି ପାରିଲେ ଯେ କୌଣସି ଅଞ୍ଚଳର ନଦୀ ଜଳକୁ ନିୟନ୍ତ୍ରଣ କରାଯାଇପାରିବ ବୋଲି ସେ ମତବ୍ୟକ୍ତ କରିଛନ୍ତି ।

ଉକ୍ତ ନୀତିଗୁଡ଼ିକୁ ଅନୁସରଣ କରି ଓଡ଼ିଶାର ନଦୀଗୁଡ଼ିକରେ ଏହିଭଳି ବନ୍ୟା ନିୟନ୍ତ୍ରଣ କରାଯାଇପାରିବ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଏ ସମ୍ବନ୍ଧରେ ତୁରନ୍ତ କୌଣସି ପଦକ୍ଷେପ ନନେଲେ ଏଥିନିମନ୍ତେ ଏକ ବାତାବରଣ ସୃଷ୍ଟି କରାଯାଇପାରିବ । ଫଳରେ କେତେକ ଅପ୍ରତ୍ୟାଶିତ ଅଞ୍ଚଳରେ ବନ୍ୟା ଦେଖାଦେଇପାରେ ।

ମାତ୍ର ସେହି ଅଞ୍ଚଳଗୁଡ଼ିକରେ ସବୁ ସମୟରେ ବନ୍ୟା ବିପତ୍ତି ଲାଗି ରହିଛି ତାହା ସବୁବେଳପାଇଁ ରହିବ ନାହିଁ । ବନ୍ୟାଞ୍ଚଳରେ ବାସ କରୁଥିବା ଲୋକମାନେ ଏବେଠାରୁ ସଚେତନ ରହିବା ସଙ୍ଗେ ସଙ୍ଗେ ଯେତେବେଳେ ବନ୍ୟା ଦେଖାଦେବ, ସେ ସମୟରେ ସେମାନେ ବନ୍ୟା ପରିସ୍ଥିତିକୁ ସହଜରେ ମୁକାବିଲା କରିପାରିବେ ।

## ୧ । ଗଠନମୂଳକ ବନ୍ୟା ନିୟନ୍ତ୍ରଣ ବ୍ୟବସ୍ଥା

### (କ) ବହୁମୁଖୀ ଜଳଭଣ୍ଡାର ଓ ବନ୍ଧ

ବ୍ରାହ୍ମଣୀ, ବୈତରଣୀ ଓ ସୁବର୍ଣ୍ଣରେଖା ନଦୀର ଅବବାହିକା ଅଞ୍ଚଳର ସ୍ଥଳସ୍ଥିତି ଓ ଅତ୍ୟଧିକ ବନ୍ୟା ବିପତ୍ତି ଓ ବନ୍ୟା ନିୟନ୍ତ୍ରଣ ବ୍ୟବସ୍ଥା ସ୍ୱରୂପ ନିର୍ମିତ ହୋଇଥିବା ହୀରାକୁଦ ବହୁମୁଖୀ ଜଳଭଣ୍ଡାରରୁ ଯେଉଁ ଅଭିଜ୍ଞତା ମିଳିଛି, ସେଗୁଡ଼ିକୁ ବିଚାରକୁ ନେଇ ବନ୍ୟାଜଳ ନିୟନ୍ତ୍ରଣ କରିବା ଓ ସମତଳ ଅଞ୍ଚଳକୁ ବନ୍ୟା ଦାଉରୁ ରକ୍ଷା କରିବା ନିମନ୍ତେ ପ୍ରଥମେ ବନ୍ୟା ନିୟନ୍ତ୍ରଣ ବ୍ୟବସ୍ଥା କରାଯିବା ଉଚିତ । ଓଡ଼ିଶାର ଦ୍ୱିତୀୟ ବୃହତ୍ତମ ନଦୀ ବ୍ରାହ୍ମଣୀର ଅବବାହିକା ୧୫,୦୦୦ ବର୍ଗମାଇଲ । ୨୪ରୁ ୪୮ ଘଣ୍ଟା ମଧ୍ୟରେ ଏହି ନଦୀରେ ହଠାତ୍ ୯ ଲକ୍ଷ କ୍ୟୁସେକ୍ ପାଣି ସମତଳ ଅଞ୍ଚଳକୁ ପ୍ରବାହିତ ହୋଇଥାଏ ଓ ସମୁଦ୍ରରେ ମିଶିବା ପୂର୍ବରୁ ମଧ୍ୟେ ମଧ୍ୟେ ଏହା ଜଳ ଲହରୀ ପ୍ରଳୟ ସୃଷ୍ଟି କରିଥାଏ । ଏଥି ନିମନ୍ତେ ବ୍ରାହ୍ମଣୀ ନଦୀ ଉପରେ ରାଜ୍ୟ ତଥା କେନ୍ଦ୍ର ସରକାରଙ୍କ ମିଳିତ ସହଯୋଗରେ ୫୭.୯ କୋଟି ଟଙ୍କା ବ୍ୟୟ ଅଟକଳରେ ବହୁବିଧ ବନ୍ୟା ନିୟନ୍ତ୍ରଣ ଓ ବିଦ୍ୟୁତ୍ ଉତ୍ପାଦନପାଇଁ କାର୍ଯ୍ୟକାରୀ ହେବାକୁ ଯାଉଥିବା ରେଙ୍ଗାଳିବନ୍ଧ ଯୋଜନାର ଭିତ୍ତିପ୍ରସ୍ତର ୧୯୭୩ ମସିହାରେ ପ୍ରଧାନମନ୍ତ୍ରୀ ସ୍ଥାପନ କରିଥିଲେ । ଏ ବନ୍ଧର ନିର୍ମାଣ କାର୍ଯ୍ୟ ତୁରନ୍ତ ସାରିବାକୁ ହେଲେ, ଏଥିପାଇଁ ଅଟକଳ କରାଯାଇଥିବା ଅର୍ଥର ପରିମାଣ ବୃଦ୍ଧି ପାଇବ ଏବଂ ବହୁଦୂର ପର୍ଯ୍ୟନ୍ତ ସମତଳ ଅଞ୍ଚଳକୁ ବନ୍ୟାଦାଉରୁ ରକ୍ଷା କରାଯାଇପାରିବ । ପ୍ରତିବର୍ଷର ବନ୍ୟାଯୋଗୁଁ ଯେଉଁ ପରିମାଣର କ୍ଷୟକ୍ଷତି ଘଟୁଛି, ତାହା ଏଭଳି ବହୁମୁଖୀ ଜଳଭଣ୍ଡାର ନିର୍ମାଣ କରିବାପାଇଁ ଯଥେଷ୍ଟ । ପାଞ୍ଚବର୍ଷ ମଧ୍ୟରେ ଏହି ବନ୍ଧ ନିର୍ମାଣ କରିବାପାଇଁ ଯେଉଁ ପ୍ରସ୍ତାବ ରହିଛି, ସେଥି ନିମନ୍ତେ ବ୍ୟୟ ଅଟକଳ ବୃଦ୍ଧି ପାଇବାର ଯଥାର୍ଥତା ରହିଛି । ଏହାଫଳରେ ଅତ୍ୟଧିକ ବନ୍ୟା ସମୟରେ ଜଳର ପରିମାଣକୁ ୪.୫ ଲକ୍ଷ କ୍ୟୁସେକ୍‌କୁ କମେଇ ଦିଆଯାଇ ପାରିବ ଏବଂ ପରେ ଅନ୍ୟାନ୍ୟ ବନ୍ୟା ରିଲିଫ୍ ବ୍ୟବସ୍ଥାପାଇଁ ଯେଉଁସବୁ ପରାମର୍ଶ ଦିଆଯାଇଛି ତାହା କରିବା ସମ୍ଭବ ହୋଇପାରିବ ।

ସେହିପରି ସ୍ରୋତସ୍ୱିନୀ ତଥା ବିପଦ ସଙ୍କୁଳ ବୈତରଣୀ ନଦୀ ଉପରେ ଭୀମକୁଣ୍ଡ ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ କରାଗଲେ ଯଥେଷ୍ଟ ପରିମାଣରେ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଇ ପାରିବ ଓ ୩.୮ ଲକ୍ଷ ଏକର କୃଷି ଜମିକୁ ଜଳସେଚନର ସୁବିଧା ସୁଯୋଗ ଯୋଗାଇ ଦିଆଯିବ । ଏତଦ୍ ବ୍ୟତୀତ ବନ୍ୟାର ଜଳ ୭ ଲକ୍ଷ କ୍ୟୁସେକ୍‌ରୁ ୨.୫ ଲକ୍ଷ କ୍ୟୁସେକ୍‌କୁ ହ୍ରାସ କରାଯାଇ ପାରିବ । କେନ୍ଦ୍ର ସରକାରଙ୍କ ଦ୍ୱାରା ଏହି ଯୋଜନାକୁ ରେଙ୍ଗାଲି ନଦୀବନ୍ଧ ପରିକଳ୍ପନା ସଙ୍ଗେ ଏକ ସମୟରେ କାର୍ଯ୍ୟକାରୀ କରାଗଲେ କଟକ ଓ ବାଲେଶ୍ୱର ଜିଲ୍ଲାର ସମତଳ ଅଞ୍ଚଳଗୁଡ଼ିକରେ ବନ୍ୟାର ପ୍ରକୋପ ଯଥେଷ୍ଟ ପରିମାଣରେ ହ୍ରାସ ପାଇ ପାରିବ ଓ କୃଷି ଉତ୍ପାଦନ ବୃଦ୍ଧି ପାଇଁ ଜଳସେଚନ ତଥା ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯାଇ ପାରିବ । ଚାନ୍ଦିଲ ନିକଟସ୍ଥ ପ୍ରସ୍ତାବିତ ସ୍ଥାନରେ ସୁବର୍ଣ୍ଣରେଖା ନଦୀ ଉପରେ ଏକ ବନ୍ଧ ନିର୍ମାଣ କରାଯାଇ ପାରିଲେ ଅନୁରୂପ ଫଳ ମିଳିବା ସଙ୍ଗେ ସଙ୍ଗେ ବିହାର, ପଶ୍ଚିମବଙ୍ଗ ଓ ଓଡ଼ିଶାର ପର୍ଯ୍ୟାପ୍ତ ଅଞ୍ଚଳଗୁଡ଼ିକୁ ବନ୍ୟା ଦାଉରୁ ରକ୍ଷା କରାଯାଇ ପାରିବ ।

### (ଖ) ବନ୍ଧ ଓ ଆଡ଼ିବନ୍ଧ

ବନ୍ୟାଜଳ ନିୟନ୍ତ୍ରଣ ନିମନ୍ତେ ବହୁ ପୁରାତନ କାଳରୁ ବନ୍ଧ ଓ ଆଡ଼ିବନ୍ଧଗୁଡ଼ିକୁ ଉପଯୋଗ କରାଯାଉଛି । ଓଡ଼ିଶାରେ ଜଳସେଚନ କେନାଲ ସମେତ ଶହ ଶହ ମାଇଲ ବ୍ୟାପି ବନ୍ଧ ଓ ନାଳ ରହିଛି ଏବଂ ଏତଦ୍ୱାରା ବନ୍ୟା ଜଳ ସମୁଦ୍ରକୁ ନିଷ୍କାସିତ ହେଉଛି । ମାତ୍ର ଜନସଂଖ୍ୟା ବୃଦ୍ଧି ଘଟୁଥିବାରୁ ଓ ଏହି ନାଳ ନିକଟବର୍ତ୍ତୀ ସ୍ଥାନରେ ଥିବା ଉର୍ବର ମୃତ୍ତିକାର ଆକର୍ଷଣ ହେତୁ ଏହି ଅଞ୍ଚଳ ବିନାନୁମତିରେ ଦଖଲ କରାଯାଉଅଛି ଏବଂ ଫଳରେ ନାଳଗୁଡ଼ିକ କ୍ରମଶଃ ଅଣଓସାରିଆ ହେବାରେ ଲାଗିଛି । ଅଧିକନ୍ତୁ ଅବ୍ୟବସ୍ଥିତ ଭାବେ ନଦୀବନ୍ଧ-ଗୁଡ଼ିକୁ ନିର୍ମାଣ କରାଯାଇ ଥିବାରୁ ଉକ୍ତ ବନ୍ଧଗୁଡ଼ିକ ବନ୍ୟା ନିୟନ୍ତ୍ରଣ କରିବା ଦିଗରେ ବ୍ୟର୍ଥ ହୋଇଛି ।

ଜଳାଶୟ ଗୁଡ଼ିକରେ ଥିବା ଅବବାହିକାର ବଳକା ଜଳ ନିଷ୍କାସନ ନିମନ୍ତେ ସଂପୃକ୍ତ ନାଳଗୁଡ଼ିକର ଜଳ-ପରିବହନ ଶକ୍ତି ବୃଦ୍ଧି କରିବାକୁ ହେବ । ଏହା କଲାପରେ ସଂପୃକ୍ତ ନାଳଗୁଡ଼ିକ ଓସାରିଆ କରିବା ସଙ୍ଗେ ସଙ୍ଗେ ଗଭୀର କରିବାକୁ ପଡ଼ିବ । ଫଳରେ ନାଳର ଜଳ ପ୍ରବାହିତ ଅଞ୍ଚଳ ବୃଦ୍ଧି ପାଇବ ଓ ଜଳର ବନ୍ଧ ସ୍ରୋତ କ୍ରମଶଃ ହ୍ରାସ ପାଇବ ତଥା ଜଳର ସ୍ରୋତକୁ ନିୟନ୍ତ୍ରିତ କରିବା ସଙ୍ଗେ ସଙ୍ଗେ ବନ୍ଧ ପାର୍ଶ୍ୱବର୍ତ୍ତୀ ମୃତ୍ତିକା କ୍ଷୟକୁ ନିୟନ୍ତ୍ରଣ କରାଯାଇ ପାରିବ । ଯେଉଁ ନାଳଗୁଡ଼ିକ ବଳକା ଜଳ ନିଷ୍କାସନ କରିବାରେ ଅସମର୍ଥ ଅଟନ୍ତି ସେହି ନାଳ ପାଖେ ପାଖେ ସମାନ୍ତରାଳ ନାଳ ଖୋଳିବା ସଙ୍ଗେ ସଙ୍ଗେ ଜଳର ଗତିପଥକୁ ଅନ୍ୟ ଦିଗକୁ ବଦଳାଇବା ପାଇଁ ନାଳ ଖୋଳିବା ମଧ୍ୟ ଆବଶ୍ୟକ । ସଂପୃକ୍ତ ଅଞ୍ଚଳ ଓ ବନ୍ୟା ଜଳ ସମ୍ପର୍କରେ ସବିଶେଷ ସର୍ଭେକୁ ଭିତ୍ତିକରି ଏକ ସମନ୍ୱିତ ବନ୍ୟା ନିୟନ୍ତ୍ରଣ ଯୋଜନା କାର୍ଯ୍ୟକାରୀ କରିବା ଏକାନ୍ତ ପ୍ରୟୋଜନ ।

ବନ୍ୟାଞ୍ଚଳ ମଧ୍ୟରେ ଜନବସତି ଥିବା ଅନେକ ଦ୍ୱୀପରେ ଉନ୍ନତ କୃଷି କ୍ଷେତ୍ର ରହିଛି । ଏ ସବୁରେ ବହୁଲୋକ ବସବାସ କରୁଛନ୍ତି ଓ ଏଠାରେ ବହୁ ବଳକା ଧାନ ମଧ୍ୟ ରହିଛି । ତେଣୁ, ଏ ସବୁକୁ ବନ୍ୟା ଦାଉରୁ ରକ୍ଷା କରିବା ଆବଶ୍ୟକ । ଅତୀତରେ ଓଡ଼ିଶାରେ କେତେକ ସୋଣବନ୍ଧ ତଥା ଶଙ୍ଖବନ୍ଧ ପରୀକ୍ଷାମୂଳକ ଭାବେ ନିର୍ମାଣ କରାଯାଇଛି । ସେଗୁଡ଼ିକ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ସେଥିରୁ ଅଧିକାଂଶକୁ ଯୋଜନାବଦ୍ଧ ଭାବେ ନିର୍ମାଣ କରିବାକୁ ହେବ ।

## (ଗ) ଜଳ ନିଃସାରଣ

ନଦୀଗୁଡ଼ିକ ପଶ୍ଚିମରୁ ପୂର୍ବକୁ ପ୍ରବାହିତ ହେଉଛନ୍ତି । ଜାତୀୟ ରାଜପଥ ତଥା ରେଳପଥଗୁଡ଼ିକ ଉପକୂଳ ମଧ୍ୟ ଦେଇ ଉତ୍ତରରୁ ଦକ୍ଷିଣକୁ ଯାଇଛି । ଉକ୍ତ ରାଜପଥ ଓ ରେଳପଥଗୁଡ଼ିକରେ ଜଳ ନିଃସାରଣ କରିବା ନିମନ୍ତେ ନିର୍ଗମ ପଥ ନଥିବାରୁ ଉପକୂଳବର୍ତ୍ତୀ ନଦୀଗୁଡ଼ିକର ଜଳ ନିଷ୍କାସନ ବିଶେଷ ଭାବେ ବ୍ୟାହତ ହୋଇଥାଏ । ଏତଦ୍ ବ୍ୟତୀତ ପ୍ରବଳଭାବେ ଜୁଆର ଆସିବା ସମୟରେ ନିମ୍ନ ସମତଳ ଭୂମିରେ ସ୍ରୋତର କ୍ରମଶଃ କଳଗତ ହେତୁ ବନ୍ୟାଜଳ ନିଷ୍କାସନରେ ବିଳମ୍ବ ଘଟିଥାଏ । ଏପରି ଅବସ୍ଥାରେ ରାଜପଥଗୁଡ଼ିକରେ ଜଳ ନିର୍ଗମ ପଥ ଓ ବ୍ରାହ୍ମଣୀ ନଦୀ ଉପରେ ଥିବା ମଦନପୁର କଟ୍, ସୁବର୍ଣ୍ଣରେଖା ନଦୀ ଉପରେ ଥିବା ବାଟଗାଁ କଟ୍ ଓ ଖର୍ସୁଆ ନଦୀ ଉପରେ ଥିବା ଗବକୁଣ୍ଡ କଟ୍ ପରେତ ଜଳ ନିଃସାରଣ କଟ୍ ଗୁଡ଼ିକ ଦ୍ୱାରା ଅଧିକ ଜଳ ସମୁଦ୍ରକୁ ନେବା ପାଇଁ ଉଦ୍ୟମ ହେବା ଆବଶ୍ୟକ ।

## ୨ । ବନ୍ୟା ପ୍ରତିରୋଧକ

## (କ) ବାଲି ଓ ପଟୁମାଟିର ନିୟନ୍ତ୍ରଣ ଏବଂ ମୃତ୍ତିକା ସଂରକ୍ଷଣ

ନଦୀ ବନ୍ଧର ପଶ୍ଚାତ୍ ଭାଗରେ ଜଳଭଣ୍ଡାର ଓ ଜଳ ନିଷ୍କାସନ କରୁଥିବା କେନାଲଗୁଡ଼ିକ ନଦୀର ଉପର ମୁଣ୍ଡରୁ ବୋହି ଆସୁଥିବା ପଟୁମାଟି ଓ ବାଲି ଦ୍ୱାରା ପୋତି ହୋଇଯିବା ଫଳରେ ଜଳ ନିଷ୍କାସିତ ହୋଇ ନପାରି ଏହା ଶୀଘ୍ର ଅକାମୀ ହୋଇପଡ଼େ । ସୁତରାଂ ଜଙ୍ଗଲ, ପଡ଼ିଆ ଓ ପାର୍ବତ୍ୟ ଗଡ଼ାଣିଆ ଭୂମିକୁ ସଂରକ୍ଷଣ କରାଯିବା ଏକାନ୍ତ ଆବଶ୍ୟକ । ମୃତ୍ତିକା ସଂରକ୍ଷଣ ଓ ବୃକ୍ଷ ରୋପଣ ବନ୍ୟା ନିୟନ୍ତ୍ରଣ କରିବା ଦିଗରେ ବିଶେଷ ସହାୟକ । ବର୍ଷା ଜଳର ସ୍ରୋତ ଏହା ଦ୍ୱାରା ବାଧା ପ୍ରାପ୍ତ ହୋଇଥାଏ ଓ ବହୁ ସମୟ ଧରି ଏହା ଭୂମି ସଂସ୍ପର୍ଶରେ ରହିବା ଯୋଗୁଁ ଜଳର କେତେକାଂଶ ମାଟି ଶୋଷିନିଏ । ଅପର ପକ୍ଷରେ ଏହା ବନ୍ୟାର ପ୍ରକୋପକୁ ହ୍ରାସ କରିଥାଏ ଏବଂ ନଦୀର ଉପର ଭାଗରେ ଥିବା ସମତଳ ଅଞ୍ଚଳଗୁଡ଼ିକରେ ପାଣି ଜମି ରହେ । ପଟୁମାଟି ଓ ମୃତ୍ତିକା କ୍ଷୟ ହ୍ରାସ ପାଇବା ଫଳରେ ଜଳ ଭଣ୍ଡାର ଓ କେନାଲଗୁଡ଼ିକ ଶୀଘ୍ର ପୋତି ହୁଏ ନାହିଁ ଏବଂ ଏଗୁଡ଼ିକରେ ଅଧିକ ପରିମାଣର ଜଳ ଧାରଣ କରିବା ସମ୍ଭବପର ହୋଇଥାଏ । ବ୍ରାହ୍ମଣୀ, ବୈତରଣୀ ଓ ସୁବର୍ଣ୍ଣରେଖା ନଦୀଗୁଡ଼ିକର ଅବବାହିକାରେ ଜଙ୍ଗଲକ୍ଷୟ ପ୍ରତିରୋଧ କାର୍ଯ୍ୟକ୍ରମ ଦ୍ରୁତ ବର୍ଦ୍ଧନଶୀଳ ବୃକ୍ଷରୋପଣ, ବନବାଡ଼ି ନିର୍ମାଣ ଓ ଜମି ପ୍ରସ୍ତୁତି କାର୍ଯ୍ୟକୁ ତ୍ୱରାନ୍ୱିତ କରାଗଲେ ଅନ୍ତତଃ ଦଶନ୍ଧିରେ ଏ ଦିଗରେ ଉଲ୍ଲେଖନୀୟ ସଫଳତା ହାସଲ କରାଯାଇ ପାରିବ ।

## (ଖ) ବନ୍ୟା ନିରୋଧକ ଆଶ୍ରୟସ୍ଥଳୀ

ପ୍ରାକୃତିକ ପରିବେଶ ସହ ସମାଜ ନିଜକୁ ଖାପ ଖୁଆଇ ଚଳିବା ଆବଶ୍ୟକ । ଓଡ଼ିଶାରେ ବନ୍ୟା ସେହିଭଳି ଏକ ପ୍ରାକୃତିକ ବିପର୍ଯ୍ୟୟ । କେତେବେ ସମୟରେ ଅପ୍ରତ୍ୟାଶିତ ପ୍ରଳୟଙ୍କରୀ ବନ୍ୟା କିମ୍ବା ସେହିଭଳି ପ୍ରାକୃତିକ ବିପର୍ଯ୍ୟୟ ଘଟିବା ଅବଶ୍ୟମ୍ଭାବୀ । ସବୁ ପ୍ରକାରର ବନ୍ୟା ନିୟନ୍ତ୍ରଣ ବ୍ୟବସ୍ଥା ସତ୍ତ୍ୱେ ସେଭଳି ଦୈବୀ ପରିସ୍ଥିତି ସୃଷ୍ଟି ହୁଏ, ତା' ସହିତ ଖାପ ଖୁଆଇ ସମାଜକୁ ବଞ୍ଚିବାକୁ ହେବ । ପ୍ରାକୃତିକ ପରିସ୍ଥିତି ସହିତ ଖାପ ଖୁଆଇ ଲୋକମାନଙ୍କୁ ବସବାସ କରିବାକୁ ପଡ଼ିବ । ବନ୍ୟା ପ୍ରବଣ ତଟ ଅଞ୍ଚଳରେ ବାସ କରୁଥିବା ଓ ବାସ କରୁଥିବା ଲୋକମାନେ ସମ୍ଭାବ୍ୟ ବନ୍ୟା ପରିସ୍ଥିତି ସହିତ ଖାପ ଖୁଆଇ ଚଳିବା ଆବଶ୍ୟକ । ଉଦାହରଣସ୍ୱରୂପ, ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳ, ସମତଳ ଓ ଖାଲୁଆ ହୋଇଥିବା ଯୋଗୁଁ ବନ୍ୟାଜଳ ଶୀଘ୍ର ନିଷ୍କାସିତ ହୋଇପାରେ ନାହିଁ ଏବଂ ସମଗ୍ର ଅଞ୍ଚଳ ବନ୍ୟାଜଳରେ ବୁଡ଼ିରହିବା ଫଳରେ ଗମନାଗମନରେ ଘୋର ବାଧା ସୃଷ୍ଟି ହୋଇଥାଏ । ଏଭଳି ବିପତ୍ତି ପାଇଁ କଳକାରଖାନା, ଶିକ୍ଷାନୁଷ୍ଠାନ ଓ ଜନସାଧାରଣ ବାସ କରୁଥିବା ସ୍ଥାନଗୁଡ଼ିକ ଉଚ୍ଚ ସ୍ଥାନରେ ହେବା ଆବଶ୍ୟକ । ବିଶେଷ କରି ସମସ୍ତ ଶିକ୍ଷାନୁଷ୍ଠାନ, ଚିକିତ୍ସାଳୟ, ଅଫିସ ଘର, ସମବାୟ ସମିତି, ଶସ୍ୟଗୋଲା, ଗୁଦାମ ଘର ଓ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠାନଗୁଡ଼ିକୁ ଖୁବ୍ ଉଚ୍ଚ ସ୍ଥାନରେ କିମ୍ବା ଦ୍ୱିତଳ ପ୍ରାସାଦ-ମାନଙ୍କରେ ପ୍ରତିଷ୍ଠା କରାଗଲେ ବନ୍ୟା ସମୟରେ ସେହିସବୁ ସ୍ଥାନଗୁଡ଼ିକୁ ମହକୁଦ କେନ୍ଦ୍ର, ରିଲିଫ କେନ୍ଦ୍ର ଓ ଆଶ୍ରୟସ୍ଥଳୀରୂପେ ବ୍ୟବହାର କରାଯାଇପାରିବ । ସମତଳ ଅଞ୍ଚଳରେ ଥିବା ନଦୀ ବନ୍ଧଗୁଡ଼ିକୁ ବନ୍ୟାଜଳ ସ୍ପର୍ଶ କରୁଥିବା ପତ୍ତନଠାରୁ ଅଧିକ ଉଚ୍ଚ କରିବା ସଙ୍ଗେ ସଙ୍ଗେ ଗମନାଗମନର ସୁବିଧା କରିବା ଏହାର ଉପରିଭାଗକୁ ପ୍ରଶସ୍ତ କରିଦେବା ଆବଶ୍ୟକ । ଏହା ଫଳରେ ରିଲିଫ କାର୍ଯ୍ୟକୁ ତ୍ୱରାନ୍ୱିତ କରାଯାଇପାରିବ । ଆବଶ୍ୟକସ୍ଥଳେ ଆକାଶ ମାର୍ଗରୁ ଖାଦ୍ୟପଦାର୍ଥ ପକାଇବା ସକାଶେ ହେଲିକପ୍ଟର ଓହ୍ଲାଇବାଭଳି ସ୍ଥାନ ପ୍ରସ୍ତୁତ କରାଯିବା ଆବଶ୍ୟକ ।

## ୩ । ବନ୍ୟାର ପୂର୍ବାଭାଷ

ଭୁବନେଶ୍ୱରସ୍ଥିତ ପାଣିପାଗ ଅଫିସ ଓ ପାରାଦ୍ୱୀପ ର୍ୟାଡ଼ାର କେନ୍ଦ୍ର ସହିତ ରାଜ୍ୟରେ ଅବସ୍ଥିତ ସମସ୍ତ ପାଣିପାଗ କେନ୍ଦ୍ର ସହ ସମନ୍ୱୟ ଓ ଯୋଗାଯୋଗ ସ୍ଥାପନ କରି ଠିକ୍ ସମୟରେ ପ୍ରବଳ ବର୍ଷା ଓ କେଉଁ ସ୍ଥାନକୁ ଘୂର୍ଣ୍ଣିବାତ୍ୟା ସମ୍ମୁଖୀନ ହୋଇ ବ୍ୟାପକ ହେବ, ସେ ସମ୍ପର୍କରେ ସଠିକ୍ ସମ୍ବାଦ ପରିବେଷଣ କରିବା ସମ୍ଭବପର ହୋଇଛି । ବାୟୁମଣ୍ଡଳରେ ଦ୍ରୁତ ପରିବର୍ତ୍ତନ ଘଟୁଥିବା ଯୋଗୁଁ ସୁଦୂର ଭବିଷ୍ୟତ ପାଇଁ ପାଣିପାଗ ସଂକ୍ରାନ୍ତ ବିବରଣୀ ସଠିକ୍‌ଭାବେ ଦିଆଯିବା ସମ୍ଭବପର ନୁହେଁ ବୋଲି ପୂର୍ବରୁ କୁହାଯାଇଛି । ଏସବୁ ଅନିଶ୍ଚିତ ବ୍ୟବସ୍ଥା ସତ୍ତ୍ୱେ ବେତାର କେନ୍ଦ୍ର, ଟେଲିଭିଜନ, ଗାଁ ଗହଳରେ ଥିବା ରେଡ଼ିଓ ଜରିଆରେ ବନ୍ୟା ସଂକ୍ରାନ୍ତୀୟ ସତର୍କବାଣୀ ନିର୍ଭରଯୋଗ୍ୟ ଭାବେ ଜଣାଇବା ସମ୍ଭବପର ହେବ । ଏହା ଫଳରେ ଶାସକବୃନ୍ଦ ବିଭିନ୍ନ ସ୍ୱୟଂସେବୀ ସଂସ୍ଥା ଏବଂ ଏପରି କି ବ୍ୟକ୍ତି ବିଶେଷ ବନ୍ୟା ସମୟର ଜରୁରୀକାଳୀନ ପରିସ୍ଥିତି ପାଇଁ ପ୍ରସ୍ତୁତ ହୋଇ ପାରିବେ । ଏଭଳି ଅନେକଗୁଡ଼ିଏ ଫଳପ୍ରଦ ପଦକ୍ଷେପ ଗ୍ରହଣ କରାଯାଇପାରେ ।

(୧) ବହୁ ପରିମାଣର ଜଳଗ୍ରହଣ କରିବା ଏବଂ ଦୀର୍ଘ ସମୟ ଧରି ଜମି ରହୁଥିବା ବଢ଼ିପାଣି ନିଷ୍କାସ କରିବା ସକାଶେ ଜଳଭଣ୍ଡାର ଓ ଏହାର ନାଳଗୁଡ଼ିକୁ ସଫା କରିବା ।

(୨) ଲୋକମାନଙ୍କୁ ନିଚାଣିଆ ଜାଗାଗୁଡ଼ିକରୁ ଉଚ୍ଚ ଓ ନିରାପଦ ସ୍ଥାନକୁ ଶୃଙ୍ଖଳିତଭାବେ ପଠାଇବା ଦିଗରେ ବ୍ୟବସ୍ଥା ଗ୍ରହଣ ।

(୩) ବନ୍ଧ ଏବଂ ନାଳଗୁଡ଼ିକରେ ଥିବା ଦୁର୍ବଳ ସ୍ଥାନଗୁଡ଼ିକୁ ଚେକ୍ ପୋଷ୍ଟଗୁଡ଼ିକୁ ମଜବୁତ କରିବା ।

(୪) ସୁବିଧାଜନକ ସ୍ଥାନଗୁଡ଼ିକରେ ଖାଦ୍ୟପଦାର୍ଥ, ଅତ୍ୟାବଶ୍ୟକ ସାମଗ୍ରୀ, ଔଷଧପତ୍ର ଏବଂ ବନ୍ୟାନିୟନ୍ତ୍ରଣ ସରଞ୍ଜାମ ପ୍ରଭୃତି ମହଜୁଦ କରି ରଖିବା ଦିଗରେ ସ୍ଥାନୀୟ ପ୍ରଶାସକମାନେ ଆବଶ୍ୟକ ପଦକ୍ଷେପ ଗ୍ରହଣ କରିପାରିବେ । ରିଲିଫ୍ ବୋଟ ଯାନବାହନ ଏବଂ ବିଭିନ୍ନ ସାହାଯ୍ୟକାରୀ ଦଳ ସର୍ବଦା ପ୍ରସ୍ତୁତ ରହିବାପାଇଁ ସେମାନଙ୍କୁ ଯଥେଷ୍ଟ ଆଗରୁ ସତର୍କ କରାଇ ଦିଆଯିବ ।

ପୂର୍ବରୁ ବନ୍ୟା ସଂକ୍ରାନ୍ତରେ ସତର୍କ କରାଇ ଦେବାପାଇଁ ଏକ ସୁପରିକଳ୍ପିତ ବ୍ୟବସ୍ଥା ଗ୍ରହଣ କରିବା ସଙ୍ଗେ ସଙ୍ଗେ ଆକସ୍ମିକ ବନ୍ୟାନିୟନ୍ତ୍ରଣ ଯୋଜନା କାର୍ଯ୍ୟକାରୀ କରିବା ଫଳରେ ବହୁ ପରିମାଣରେ ଧନଜୀବନର କ୍ଷୟକ୍ଷତିକୁ ରୋକାଯାଇପାରିବ ।

## ୪ । ବନ୍ୟା ପ୍ରତିରୋଧ

ପୃଥିବୀର ଉନ୍ନତ ରାଷ୍ଟ୍ରଗୁଡ଼ିକରେ ଅତ୍ୟଧିକ ବୃଷ୍ଟିପାତକୁ ପ୍ରତିରୋଧ କରାଯାଇ ବନ୍ୟାନିୟନ୍ତ୍ରଣ କରାଯାଉଛି । ଏହାକୁ ପାଗ ପରିବର୍ତ୍ତନ ବୋଲି ମଧ୍ୟ କୁହାଯାଏ । କୃତ୍ରିମ ମେଘ ସୃଷ୍ଟି କରାଯାଇ ଜଳୀୟବାଷ୍ପର ନିୟନ୍ତ୍ରଣ କରାଯାଇପାରୁଛି । ବଡ଼ ଧରଣର ଝଡ଼, ଘୂର୍ଣ୍ଣିବାତ୍ୟା ଏବଂ ଏଭଳି ପ୍ରାକୃତିକ ବିପର୍ଯ୍ୟୟକୁ ନିୟନ୍ତ୍ରଣ କରିବା ଦିଗରେ ଅଦ୍ୟାବଧି ଉଦ୍ୟମ ଚାଲିଛି । ନିକଟ ଭବିଷ୍ୟତରେ ଏହିଭଳି ପାଗ ପରିବର୍ତ୍ତନ ବ୍ୟବସ୍ଥା ଓଡ଼ିଶାରେ କାର୍ଯ୍ୟକାରୀ କରିବା ସମ୍ଭବପର ନୁହେଁ । କିନ୍ତୁ ଭବିଷ୍ୟତରେ ଶୃଙ୍ଖଳିତଭାବେ ବନ୍ୟାନିୟନ୍ତ୍ରଣ ବ୍ୟବସ୍ଥା କାର୍ଯ୍ୟକାରୀ କରିବାବେଳେ ଏହାର ସମ୍ଭାବନା ତଥା କାର୍ଯ୍ୟକାରିତା ପ୍ରତି ଦୃଷ୍ଟି ଦିଆଯିବ ।

## ୫ । ବୀମା

ପ୍ରଚଳିତ ଆଇନ ଅନୁଯାୟୀ ବନ୍ୟାଗ୍ରସ୍ତ ଅଞ୍ଚଳର ଲୋକମାନଙ୍କ ପାଇଁ ବୀମା କିମ୍ବା କ୍ଷତିପୂରଣ ଦେବାର ବ୍ୟବସ୍ଥା ହୋଇ ନଥିବାବେଳେ ବର୍ଷକୁ ବର୍ଷ ସରକାରଙ୍କ ତରଫରୁ ବନ୍ୟା ପ୍ରପୀଡ଼ିତ ଲୋକମାନଙ୍କୁ ମାଗଣାରେ ରିଲିଫ ଏବଂ ଋଣ ଆଦି ଯୋଗାଇ ଦିଆଯାଇଥାଏ । ଏହା ବ୍ୟତୀତ ଆନ୍ତର୍ଜାତୀୟ, ଜାତୀୟ ଏବଂ ସ୍ଥାନୀୟ ସ୍ୱେଚ୍ଛାସେବୀ ସଙ୍ଗଠନଗୁଡ଼ିକ ବନ୍ୟା ପ୍ରପୀଡ଼ିତ ଲୋକମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଆଗେଇ ଆସନ୍ତି । ସେମାନଙ୍କ ତରଫରୁ ବନ୍ୟା ପ୍ରପୀଡ଼ିତ ଲୋକମାନଙ୍କୁ ଖାଦ୍ୟ ପଦାର୍ଥ ଓ ଔଷଧପତ୍ର ପ୍ରଭୃତି ଯୋଗାଇ ଦିଆଯାଇଥାଏ । ବନ୍ୟାଦ୍ୱାରା ଯେଉଁ କ୍ଷୟକ୍ଷତି ହୋଇଥାଏ, ସେ ଦିଗରେ ଏଗୁଡ଼ିକ ଏକ ପରୋକ୍ଷ ବୀମାରୂପେ କାର୍ଯ୍ୟ କରିଥାଏ । କିନ୍ତୁ ଏହିଭଳି ସାହାଯ୍ୟ ବନ୍ୟା ପ୍ରପୀଡ଼ିତ ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା ଲାଘବ କରୁଥିଲେହେଁ ସେମାନଙ୍କ ପ୍ରକୃତ କ୍ଷୟକ୍ଷତିର ଭରଣା କରିପାରେ ନାହିଁ । ପଞ୍ଚାୟତ, ମ୍ୟୁନିସିପାଲିଟି, ମହିଳା ସଂଗଠନ ଏବଂ ଯୁବ ସଂଗଠନଭଳି ଗଣଅନୁଷ୍ଠାନଗୁଡ଼ିକ ବନ୍ୟା ଓ ତତ୍‌ସଂକ୍ରାନ୍ତ ଆବଶ୍ୟକ ରିଲିଫ୍ ଦିଗରେ ଯଥାଯଥଭାବେ ଅନୁଧ୍ୟାନ କରି ସେ ସବୁର ସମାଧାନ ଦିଗରେ ଲୋକମାନଙ୍କୁ ଅନୁପ୍ରାଣିତ କରିବାପାଇଁ ସଚେଷ୍ଟ ହେବା ଆବଶ୍ୟକ । ସରକାରୀ ଏବଂ ବେସରକାରୀ ସଂସ୍ଥାଗୁଡ଼ିକ ଉଦ୍ୟମରେ ଏକ ସ୍ୱତନ୍ତ୍ର ବନ୍ୟାନିୟନ୍ତ୍ରଣ ପାଣ୍ଠି ଗଠନ କରାଯାଇ ତାହା ସ୍ଥାନୀୟ ପ୍ରଶାସନ ଏବଂ ବାସିନ୍ଦାମାନଙ୍କ ମିଳିତ ସହଯୋଗରେ ପରିଚାଳିତ କରାଗଲେ ବନ୍ୟା ପ୍ରପୀଡ଼ିତ ଲୋକମାନଙ୍କୁ ରିଲିଫ୍ ଯୋଗାଇବା, ସେମାନଙ୍କ କ୍ଷୟକ୍ଷତି ଭରଣା କରିବା ଦିଗରେ ବିଶେଷ ଫଳପ୍ରଦ ହେବ ଏବଂ ବନ୍ୟାଭଳି ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଲୋକମାନଙ୍କ ମନରେ ସାହସ ଓ ବଳ ସଞ୍ଚାର କରିବା ଦିଗରେ ମଧ୍ୟ ଏହା ବିଶେଷ ସହାୟକ ହେବ ।

## ଉପସଂହାର

ରାଜ୍ୟରେ ଏକ ସୁବ୍ୟବସ୍ଥିତ ବନ୍ୟାନିୟନ୍ତ୍ରଣ ପରିକଳ୍ପନା କାର୍ଯ୍ୟକାରୀ କରିବା ସକାଶେ ଏହି ପ୍ରବନ୍ଧରେ ଯେଉଁସବୁ ବ୍ୟବସ୍ଥା ସମ୍ପର୍କରେ ସୂଚନା ଦିଆଗଲା, ବନ୍ୟାନିୟନ୍ତ୍ରଣ ସଂକ୍ରାନ୍ତ ବିଭିନ୍ନ ପର୍ଯ୍ୟାୟରେ ଅଭିଜ୍ଞତା ଥିବା କେତେକ ବ୍ୟକ୍ତି ହୁଏତ ଏଥିସହ ଏକମତ ହୋଇ ନ ପାରନ୍ତି । ଏହି ପ୍ରବନ୍ଧରେ ଯେଉଁସବୁ ପରାମର୍ଶ ଦିଆଯାଇଛି, ସେ ସବୁ ସମେତ ଅନ୍ୟାନ୍ୟ ଉପାଦେୟ ପ୍ରସ୍ତାବଗୁଡ଼ିକୁ ଏକତ୍ରିତ କରି ରାଜ୍ୟରେ ଏକ ଫଳପ୍ରଦ ବନ୍ୟାନିୟନ୍ତ୍ରଣ ବ୍ୟବସ୍ଥା ପ୍ରସ୍ତୁତ କରାଯାଇପାରେ । ଆମ ରାଜ୍ୟରେ ଏକ ସୁବ୍ୟବସ୍ଥିତ ବନ୍ୟାନିୟନ୍ତ୍ରଣ ବ୍ୟବସ୍ଥା କାର୍ଯ୍ୟକାରୀ କରିବାକୁ ହେଲେ ପ୍ରାକୃତିକ ଅବସ୍ଥା, ସାମାଜିକ ପରିବେଶ, ପ୍ରଶାସନିକ ସମ୍ଭାବନା, ଆର୍ଥିକ ଓ ବୈଷୟିକ ପ୍ରତିବନ୍ଧକ ଓ ସର୍ବୋପରି ଜନ ସହଯୋଗ ବିଷୟକୁ ଏଡ଼ାଇ ଦିଆଯାଇ ନ ପାରେ । ଆଧୁନିକ ତଥା ବୈପ୍ଳବିକ ପ୍ରଣାଳୀରେ ଓଡ଼ିଶାପାଇଁ ଏକ ସୁବ୍ୟବସ୍ଥିତ ବନ୍ୟାନିୟନ୍ତ୍ରଣ ଯୋଜନାର ଆବଶ୍ୟକତାକୁ ମଧ୍ୟ ଏଡ଼ାଇଦେବା ସମ୍ଭବପର ନୁହେଁ । ଯଦି ଏହି ପ୍ରବନ୍ଧରେ ଦିଆଯାଇଥିବା ପରାମର୍ଶ ଅନୁଯାୟୀ ବର୍ତ୍ତମାନର ବନ୍ୟାନିୟନ୍ତ୍ରଣ

ବ୍ୟବସ୍ଥାକୁ ପୁନର୍ବାର ଚିନ୍ତା କରାଯାଏ ଏବଂ ସ୍ରୋତରୋଧ, ସୁରକ୍ଷିତ, ବନ୍ୟାନିରୋଧ, ପ୍ରାକୃତିକ ନିସ୍ତାରଣ ଓ ସୀମା ପ୍ରଭୃତି ପ୍ରଗତିଶୀଳ ବନ୍ୟାନିୟନ୍ତ୍ରଣ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରାଯାଇ ସଂଗଠିତଭାବେ ପ୍ରଶାସନିକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଏ, ତେବେ ବର୍ତ୍ତମାନ ଏ ସଂକ୍ରାନ୍ତରେ ରହିଥିବା ଅନିଶ୍ଚିତତାକୁ ଦୂର କରାଯାଇ ପାରିବ ଓ ବନ୍ୟା ବିପନ୍ନ ଅଞ୍ଚଳ ଲୋକମାନଙ୍କର ମଙ୍ଗଳ ବିଧାନ କରାଯାଇପାରିବ ।

## କୃତଜ୍ଞତା ଜ୍ଞାପନ

Systematization of Flood Control Measures—Vujica Yevjevich—Journal of the Hydraulics Division.

---

## ବାସହୀନ ଲୋକମାନଙ୍କୁ ମାଗଣାରେ ବାସଗୃହ ଯୋଗାଣ

ରାଜ୍ୟର ଗ୍ରାମାଞ୍ଚଳରେ ବାସଗୃହହୀନ ଶ୍ରମଜୀବୀ ପରିବାରଗୁଡ଼ିକର ସଂଖ୍ୟା ପ୍ରାୟ ୪.୮ ଲକ୍ଷ ହେବ ବୋଲି ଅଟକଳ କରାଯାଇଛି । ରାଜ୍ୟ ସରକାର ଜମି ବଣ୍ଟନ କାର୍ଯ୍ୟକ୍ରମ ଅନୁସାରେ ଭୂମିହୀନ ବ୍ୟକ୍ତିଙ୍କୁ ମାଗଣାରେ ଘରଡିହ ଯୋଗାଇ ଦେଉଛନ୍ତି । ବାସଗୃହ ସୁବିଧା ଯୋଗାଇଦେବା ଉଦ୍ଦେଶ୍ୟରେ ରାଜ୍ୟ ସରକାର ପଞ୍ଚବାର୍ଷିକ ଯୋଜନାର ଅବଶିଷ୍ଟ ୫ ବର୍ଷ ମଧ୍ୟରେ ଏକ ସମନ୍ୱିତ ବାସଗୃହ ପରିକଳ୍ପନା କାର୍ଯ୍ୟକାରୀ କରିବାପାଇଁ ନିଷ୍ପତ୍ତି ନେଇଛନ୍ତି । ଉକ୍ତ ପରିକଳ୍ପନା ଅନୁସାରେ ଏହି ସମୟ ମଧ୍ୟରେ ଗ୍ରାମାଞ୍ଚଳର ପ୍ରାୟ ୫ଲକ୍ଷ ବାସହୀନ ପରିବାରକୁ ବାସଗୃହ ଯୋଗାଇ ଦେବା ନିମନ୍ତେ ପ୍ରସ୍ତାବ ରଖାଯାଇଛି । ଢେଙ୍କାନାଳ, ମୟୂରଭଞ୍ଜ, କଳାହାଣ୍ଡି ଓ କୋରାପୁଟ ଜିଲ୍ଲାରେ ପ୍ରଥମ କରି ଏହି ପରିକଳ୍ପନା କାର୍ଯ୍ୟକାରୀ କରାଯାଉଛି । ସମନ୍ୱିତ ଗୃହନିର୍ମାଣ ପରିକଳ୍ପନାକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ଢେଙ୍କାନାଳ, ମୟୂରଭଞ୍ଜ, କଳାହାଣ୍ଡି ଓ କୋରାପୁଟ ଜିଲ୍ଲାଗୁଡ଼ିକର ଗ୍ରାମାଞ୍ଚଳରେ କାମ କରୁଥିବା ବାସହୀନ ଶ୍ରମିକମାନଙ୍କୁ ବାସଗୃହ ଯୋଗାଇଦେବା ପାଇଁ ଚଳିତ ଆର୍ଥିକ ବର୍ଷରେ ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ ବାବଦରେ ମିଳିଥିବା ୬୩.୭୮ ଲକ୍ଷ ଟଙ୍କା ବଣ୍ଟନ କରାଯାଇଛି । ଢେଙ୍କାନାଳ ଜିଲ୍ଲାରେ ୫୦୦ଟି, ମୟୂରଭଞ୍ଜ ଜିଲ୍ଲାରେ ୨୦୦ଟି, କଳାହାଣ୍ଡି ଜିଲ୍ଲାରେ ୭୦୦ଟି ଓ କୋରାପୁଟ ଜିଲ୍ଲାରେ ୮୦୦ଟି ବାସଗୃହର ନିର୍ମାଣ କାର୍ଯ୍ୟ ଖୁବ୍ ଶୀଘ୍ର ଆରମ୍ଭ କରିବାପାଇଁ କାର୍ଯ୍ୟକ୍ରମ ସ୍ଥିର କରାଯାଇଛି ।

ସ୍ୱଳ୍ପ ଖର୍ଚ୍ଚରେ ନିର୍ମିତ ହେବାକୁ ଥିବା ପ୍ରସ୍ତାବିତ ବାସଗୃହ ଗୁଡ଼ିକ ୩୬୦ ବର୍ଗଫୁଟ ପରିମିତ ଜମି ଉପରେ ନିର୍ମାଣ କରାଯିବ । ପ୍ରତ୍ୟେକଟିରେ ଗୋଟିଏ ଶୋଇବା ଘର, ଗୋଟିଏ ରୋଷେଇ ଘର ଓ ଗୋଟିଏ ବାରଣ୍ଡା ରହିବ । ଏହି ଘରଗୁଡ଼ିକ ମାଟିରେ ତିଆରି ହେବ ଓ ନଳିଆରେ ଛପର କରାଯିବା ସଙ୍ଗେ ସଙ୍ଗେ ଚଟାଣରେ ଆସ୍ତର ବ୍ୟବସ୍ଥା ରହିବ କିମ୍ବା ସ୍ଥାନୀୟ ବଜାରରେ ମିଳୁଥିବା ସାମଗ୍ରୀ ଓ ସ୍ଥାନୀୟ ପରିବେଶକୁ ଦେଖି କଣ୍ଡାଛଣା ଓ ନଳିଆ ଟାଇଲରେ ଏହି ଘରଗୁଡ଼ିକ ନିର୍ମାଣ କରାଯିବ । ୨୦ କିମ୍ବା ତା'ଠାରୁ ଅଧିକ ଘର ଧାଡ଼ି ଧାଡ଼ି କରି ନିର୍ମାଣ କରାଯିବ ଏବଂ ସେହି ବସ୍ତିଗୁଡ଼ିକୁ ଆବଶ୍ୟକ ସ୍ଥଳେ ପାନୀୟ ଜଳ ନିମନ୍ତେ ଗୋଟିଏ କୂଅ ଓ ବରଧାଳି ପାଇଖାନା ଭଳି ସୁବିଧା ସୁଯୋଗ ଯୋଗାଇ ଦିଆଯିବ । କାମ ଚଳିବା ଭଳି ଏହି ଘରଗୁଡ଼ିକର ନିର୍ମାଣ ଖର୍ଚ୍ଚ ପ୍ରାୟ ୨,୮୦୦ଟଙ୍କା ଲେଖାଏଁ ହେବ । ଅଦକ୍ଷ ଶ୍ରମ ଓ ଜଙ୍ଗଲରୁ ଗୃହୋପକରଣ ପରିବହନ ବାବଦ ଖର୍ଚ୍ଚ ଉପକୃତ ହେଉଥିବା ବ୍ୟକ୍ତି ବହନ କରିବେ । ସେଥିନିମନ୍ତେ ଗୃହ ନିର୍ମାଣ ସମୟରେ ତାଙ୍କୁ ୧୦୦ଟଙ୍କା ଲେଖାଏଁ ସାହାଯ୍ୟ ଦିଆଯିବ । ଏହି ପରିକଳ୍ପନାର ସାଧାରଣ ଅନୁସାରେ ଦ୍ୱାରା ଗ୍ରାମାଞ୍ଚଳର ଦୁର୍ବଳ ଗୋଷ୍ଠୀର ଲୋକେ ବିଶେଷ ଉପକୃତ ହେବେ । ୧୯୭୫ ଅକ୍ଟୋବର ୨ ତାରିଖ ଠାରୁ ୪ଗୋଟି ଜିଲ୍ଲାରେ ଏହି ପରିକଳ୍ପନା ଆରମ୍ଭ କରାଯାଉଛି ଏବଂ ମୁଖ୍ୟମନ୍ତ୍ରୀ ଢେଙ୍କାନାଳ ଜିଲ୍ଲାର ଓଡ଼ପଡ଼ା ବ୍ଲକ୍ ଅନ୍ତର୍ଗତ ବଳରାମପୁରଠାରେ ଏହି କାର୍ଯ୍ୟକ୍ରମ ଉଦ୍‌ଘାଟନ କରିଛନ୍ତି ।

---

# ଓଡ଼ିଶାରେ ଭୂତଳ ଜଳସମ୍ପଦର ବିକାଶ ପାଇଁ ବିରାଟ ଯୋଜନା

## ୧୦୦କୋଟି ଟଙ୍କାର ତିନବର୍ଷିଆ ଯୋଜନା ବିଶ୍ୱବ୍ୟାଙ୍କ୍ ଦଳଙ୍କୁ ଦିଆଗଲା

ଗତ ସପ୍ତାହରେ ଓଡ଼ିଶା ଗସ୍ତ ଶେଷକରି ଫେରି ଯାଇଥିବା ବିଶ୍ୱ ବ୍ୟାଙ୍କ ଦଳର ଭୂତଳ ଜଳ ଅନୁସନ୍ଧାନ ବିଶେଷଜ୍ଞ ଶ୍ରୀ ଷ୍ଟିଫେନ୍ ଆଲ୍‌ସନ୍‌ଙ୍କୁ ଓଡ଼ିଶାର ଭୂତଳ ଜଳ ସମ୍ପଦର ବିକାଶ ସମ୍ପର୍କୀୟ ଏକ ପୂର୍ଣ୍ଣାଙ୍ଗ ଯୋଜନା ଓ ମାଷ୍ଟର ପ୍ଲାନ ପ୍ରଦାନ କରାଯାଇଥିଲା । ଶ୍ରୀ ଆଲ୍‌ସନ୍ ଏହି ରିପୋର୍ଟ ଅଧ୍ୟୟନ କରି ବିଶେଷ ସନ୍ତୋଷ ପ୍ରକାଶ କରିଥିଲେ ଏବଂ ବୈଜ୍ଞାନିକ ଭିତ୍ତିରେ ଉଠା ଜଳସେଚନ କର୍ପୋରେସନର ପ୍ରସ୍ତୁତ ଏକ ରିପୋର୍ଟ ଚମତ୍କାର ହୋଇଛି ବୋଲି କହିଥିଲେ । ଭୂତଳ ଜଳ ସମ୍ପଦ ଅନୁସନ୍ଧାନ ସଂସ୍ଥା ସମଗ୍ର ରାଜ୍ୟର ୧୫୪ ବ୍ଲକ ଅନ୍ତର୍ଗତ ୪୮,୦୦୦ ବର୍ଗ ମାଇଲ ଅଞ୍ଚଳରେ ପ୍ରାଥମିକ ଭୂତାତ୍ତ୍ୱିକ ସର୍ଭେ ଶେଷ କରି ସାରିଛନ୍ତି ଏବଂ କେଉଁ ଅଞ୍ଚଳରେ କି ପ୍ରକାର ଉଠା ଜଳସେଚନ ଯୋଜନା କାର୍ଯ୍ୟକାରୀ ହୋଇପାରିବ, ତାହା ଚିହ୍ନିତ ହୋଇଛି । ସମଗ୍ର ରାଜ୍ୟ ପାଇଁ ଏକ ଭୂତଳ ଜଳ ସମ୍ପଦ ବିକାଶ ସମ୍ପର୍କୀୟ ମାଷ୍ଟର ପ୍ଲାନ୍ ପ୍ରସ୍ତୁତ ହୋଇଛି । ରାଜ୍ୟ ସରକାର ୨୧ ଦଫା କାର୍ଯ୍ୟକ୍ରମର ୮ମ ଦଫାରେ ଭୂତଳ ଜଳ ସମ୍ପଦର ବିକାଶ ଉପରେ ଅଧିକ ଜୋର ଦେଇଥିବା ଯୋଗୁଁ ଏହା କରାଯାଇଛି ।

ଏହି ରିପୋର୍ଟରେ ପ୍ରକାଶ କରାଯାଇଛି ଯେ ଓଡ଼ିଶାରେ ଯେଉଁ ପରିମାଣ ଭୂତଳ ଜଳରାଶି ରହିଛି ତା'ର ଉପଯୋଗ କରି ବିଭିନ୍ନ ଅଞ୍ଚଳରେ ୫,୫୦,୦୦୦ ଷ୍ଟାଣ୍ଡାର୍ଡ ଖୋଲାକୂପ, ୨୮,୪୦୦ ଫିଲ୍‌ଟର ପଏଣ୍ଟ ଓ ଅଗଭୀର ନଳକୂପ, ୧୦,୦୦୦ ମଧ୍ୟମ ଓ ଗଭୀର ନଳକୂପ ଏବଂ ନଦୀ ମାନଙ୍କରୁ ୧,୫୦୦ଟି ଉଠାଜଳସେଚନ ଯୋଜନା ନିର୍ମାଣ କରାଯାଇ ପାରିବ ଏହି ଯୋଜନାଗୁଡ଼ିକ କାର୍ଯ୍ୟକାରୀ କରାଗଲେ, ୧୦ଲକ୍ଷ ୭୧ ହଜାର ହେକ୍‌ଟର ଖରିଫ ଫସଲ ଓ ୧୦ଲକ୍ଷ ୧୯ ହଜାର ହେକ୍‌ଟର ରବି ଫସଲ ପାଇଁ ଜଳସେଚନ ବ୍ୟବସ୍ଥା କରାଯାଇ ପାରିବ । ପଞ୍ଚମ ପଞ୍ଚବାର୍ଷିକ ଯୋଜନାର ଶେଷ ତିନବର୍ଷ ୧୯୭୬ରୁ ୧୯୭୮ ପର୍ଯ୍ୟନ୍ତ ପ୍ରଥମ ପର୍ଯ୍ୟାୟରେ ୧,୨୭,୦୦୦ଟି ଖୋଲାକୂପ, ୩,୦୦୦ ନଳକୂପ ଓ ନଦୀରୁ ୩୦୦ଟି ଉଠାଜଳସେଚନ ଯୋଜନା ନିର୍ମାଣ ପାଇଁ ଏକ ପରିକଳ୍ପନା ପ୍ରସ୍ତୁତ କରାଯାଇଛି । ଏହା ଫଳରେ ୩.୩୧ ଲକ୍ଷ ହେକ୍‌ଟର ଜମିରେ ଖରିଫ ଓ ୧.୯୨ଲକ୍ଷ ହେକ୍‌ଟର ଜମିରେ ରବି ଫସଲ ପାଇଁ ଜଳସେଚନ ବ୍ୟବସ୍ଥା କରାଯାଇ ପାରିବ ଓ ଏଥିରେ ୧୦୦ କୋଟି ଟଙ୍କା ଖର୍ଚ୍ଚ ହେବ ବୋଲି ଅଟକଳ କରାଯାଇଛି ।

ଭୂତଳ ଜଳସମ୍ପଦ ସର୍ଭେ ସଂଗଠନ ୪୮ ଜଣ ଜଳ ଭୂତତ୍ତ୍ୱବିତ୍, ୩୦ ଜଣ ଭୂତତ୍ତ୍ୱବିତ୍ ଓ ବିଭିନ୍ନ ବୈଷୟିକ ଜ୍ଞାନ ସମ୍ପନ୍ନ ୧୩ ଜଣ କର୍ମଚାରୀଙ୍କୁ ନେଇ ଗଠିତ ହୋଇଛି । ସମଗ୍ର ଅନୁଷ୍ଠାନଟି ଅଭିଜ୍ଞ ଓ ଦକ୍ଷ ପ୍ରୋଜେକ୍ଟ ଇଂଜିନିୟରଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହେଉଛି । ପ୍ରାଥମିକ ଜଳପରିମାଣ କେନ୍ଦ୍ରକୁ ଭିତ୍ତିକରି ଭୂତଳ ଜଳସମ୍ପଦ ବିଷୟରେ ଠିକଣାଟି ତଥ୍ୟ ସଂଗ୍ରହ କରାଯାଇଥାଏ । ଭୂତଳ ଜଳ ଅନୁସନ୍ଧାନ ସଂସ୍ଥାର ସର୍ଭେ ରିପୋର୍ଟ ଉପରେ ଭିତ୍ତିକରି ପ୍ରସ୍ତୁତ କରାଯାଇଥିବା ୧,୨୭୦ଟି ନଳକୂପ ଓ ନଦୀରୁ ୩୫୭ଟି ଉଠାଜଳସେଚନ ବିଶିଷ୍ଟ ସେହି ୫୦ଟି ଯୋଜନା ଉଠାଜଳସେଚନ କର୍ପୋରେସନ୍ ପକ୍ଷରୁ କୃଷି ଅର୍ଥଲଗାଣ କର୍ପୋରେସନ୍‌କୁ ଦିଆଯାଇଥିଲା, ସେଥିଭିତରୁ ୪୮ଟି ଯୋଜନା ମଞ୍ଜୁର ହୋଇ ଆସିଯାଇଲାଣି । ଏଥିଭିତରୁ କୌଣସିଟି ଯୋଜନା ଟେକ୍‌ନିକାଲ ତଥ୍ୟ ବା ଅନ୍ୟ କୌଣସି ବୈଷୟିକ ତ୍ରୁଟି ଯୋଗୁ ଫେରାଇ ଦିଆଯାଇନାହିଁ ।




ଓଡ଼ିଶା ସରକାରଙ୍କ ମତ୍ସ୍ୟ ବିଭାଗ କୋରାପୁଟ ଜିଲ୍ଲାରେ ପ୍ରଥମେ ମାଛଚାଷ ଆରମ୍ଭ କରିବାପାଇଁ ତା ୩-୬-୧୯୫୭ ରିଖରେ ଅନୁବିଭାଗଠାରୁ ଜୟପୁର ଟାଉନରେ ଥିବା ଜଗନ୍ନାଥ ସାଗରର ଦଖଲ ନେଇଥିଲେ । ଏହାର ଆୟତନ ଏ ୨୨୪.୫ ଏହି ଜଗନ୍ନାଥ ସାଗରରେ କେତେଗୁଡ଼ିଏ ଛୋଟ ଛୋଟ ନର୍ସରୀ ପୋଖରୀ କରାଯାଇ ମହାନଦୀରୁ ଚାଷପୋଯୋଗୀ ମାଛ ଯଥା:—ରୋହି, ଭାକୁର, ମିରିକାଲି ଓ କଲାବଇଁଶୀର ଜାଆଁଳ ଆଣି ଚାଷ କରାଗଲା । ମାଛଚାଷ ସଫଳ ହେବା ସାଥେ ସାଥେ ମାଛ ଜାଆଁଳର ଚାହିଦା ମଧ୍ୟ ବଢ଼ିଲା । ଗ୍ରାମପଞ୍ଚାୟତ ପୋଖରୀଗୁଡ଼ିକରେ ମାଛଚାଷ କରିବାପାଇଁ ଜୟପୁର ଠାରୁ ଜାଆଁଳ ସରବରାହ କରାଗଲା । ଏହାପରେ ଜିଲ୍ଲାର ଅନ୍ୟ କେତେକ ସ୍ଥାନରେ ଯଥା:—ମାଲକାନଗିରି, କୋଟପାଡ଼, ଗୁଣୁପୁର ଓ ରାୟଗଡ଼ାଠାରେ ଜାଆଁଳ ସରବରାହ କେନ୍ଦ୍ର ପ୍ରତିଷ୍ଠା କରାଗଲା । ଏହାଦ୍ୱାରା ଗ୍ରାମ ପଞ୍ଚାୟତ ଏବଂ ସର୍ବସାଧାରଣ ତାଙ୍କ ନିକଟତମ ଜାଆଁଳ ବଣ୍ଟନ କେନ୍ଦ୍ରରୁ ସୁବିଧାରେ ମାଛ ଜାଆଁଳ ନେଇ ପାରିଲେ ।

## ପଞ୍ଚାୟତ ପୋଖରୀରେ ମାଛ ଚାଷ

ସରକାରଙ୍କ ନିଷ୍ପତ୍ତିକ୍ରମେ ଅନୁବିଭାଗ ଅଧୀନରେ ଥିବା ଏହି ଜିଲ୍ଲାର ୨,୬୪୮ ଗୋଟି ପୋଖରୀ ଗ୍ରାମପଞ୍ଚାୟତକୁ ହସ୍ତାନ୍ତର କରିବାଦ୍ୱାରା ଖାଲିପଡ଼ିଥିବା ପୋଖରୀଗୁଡ଼ିକୁ ପଞ୍ଚାୟତଦ୍ୱାରା ମାଛଚାଷ କରାଯାଉଛି । ମାଛ ଏକ ସୁଷମ ଏବଂ ପୁଷ୍ଟିକର ଖାଦ୍ୟ ଏବଂ ଏହି ପୁଷ୍ଟିକର ଖାଦ୍ୟର ଉତ୍ପାଦନ ବୃଦ୍ଧି କରିବାପାଇଁ ବ୍ଲକ ସ୍ତରରେ ଜଣେ ଲେଖାଏଁ ମତ୍ସ୍ୟ ସଂପ୍ରସାରଣ ଅଧିକାରୀଙ୍କୁ ନିଯୁକ୍ତି କରାଗଲା । ମତ୍ସ୍ୟ ସଂପ୍ରସାରଣ ଅଧିକାରୀମାନେ ପଞ୍ଚାୟତକୁ ଦିଆଯାଇଥିବା ପୋଖରୀଗୁଡ଼ିକୁ ତଦାରଖ କରି ବୈଜ୍ଞାନିକ ପଦ୍ଧତିରେ କିପରି ମାଛ ଚାଷ କରାଯାଇ ପାରିବ, ତାହାର ବ୍ୟବସ୍ଥା କଲେ ।

ଏହାଦ୍ୱାରା ପଞ୍ଚାୟତ ପୋଖରୀଗୁଡ଼ିକରେ ମାଛ ଉତ୍ପାଦନ ବଢ଼ିଲା ସତ, କିନ୍ତୁ ଏହି ମାଛ ପୋଖରୀଗୁଡ଼ିକରୁ ଧରିବା ଏବଂ ବିକ୍ରୀ କରିବା ପାଇଁ ଏକ ସମସ୍ୟା ଦେଖାଦେଲା । ତେଣୁ ମତ୍ସ୍ୟବିଭାଗ ଦ୍ୱାରା ଅନ୍ୟ ଗୋଟିଏ ଯୋଜନା କରାଗଲା, ଯଦ୍ୱାରା ଗାଁ ଗହଳରେ ଥିବା ପଞ୍ଚାୟତ ପୋଖରୀ ଏବଂ ଅନ୍ୟ ମାଛ ଚାଷ ପୋଖରୀରୁ ମାଛ ମାରିବା ଏବଂ ବିକ୍ରୀ କରିବା ସୁବିଧା କରାଗଲା । ମତ୍ସ୍ୟବିଭାଗ ଏହି ମାଛ ମାରିବା ଏବଂ ବିକ୍ରୀ କରିବାପାଇଁ ଖର୍ଚ୍ଚ ବାବଦକୁ ମାଛ ଉତ୍ପାଦନର ଶତକଡ଼ା ୨୫ ସ୍ଥିର କଲେ ।

## ଜଳ ଭଣ୍ଡାରରେ ମାଛ ଚାଷ

କୋରାପୁଟ ଜିଲ୍ଲାରେ ବୃହତ୍ତମ ଜଳଭଣ୍ଡାର ଯଥା:—ଜଳପୁଟ, ବାଲିମେଳା ଓ ସ୍ତୁର ଜଳଭଣ୍ଡାରରେ ମାଛ ଚାଷ କରିବାପାଇଁ ସ୍କିମ୍ ପ୍ରସ୍ତୁତ ହୋଇ ସାରିଲାଣି । ଏହି ଜଳଭଣ୍ଡାର ନିକଟରେ ଗୋଟିଏ ଜାଆଁଳ ସରବରାହ କେନ୍ଦ୍ର ରହିବ । ଏହି କେନ୍ଦ୍ରଗୁଡ଼ିକରେ ଜାଆଁଳ ଉତ୍ପାଦନ କରାଯାଇ ସ୍ଥାନୀୟ ଚାହିଦା ଯାହା ବଳି କରାଯାଇ ବଳକା ପ୍ରାୟ ପାଞ୍ଚ ଲକ୍ଷଠାରୁ ଛଅ ଲକ୍ଷ ବଡ଼ ମାଛ ଜାଆଁଳ ଜଳଭଣ୍ଡାରଗୁଡ଼ିକରେ ମାଛ ଚାଷ ପାଇଁ ଛଡ଼ାଯିବ, ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଲା ମାଛ ଚାଷ ଜରିଆରେ ଆଦିବାସୀମାନଙ୍କର ଉନ୍ନତିସାଧନ ଜଳଭଣ୍ଡାରରେ ମାଛ ମାରିବାପାଇଁ ଆଦିବାସୀମାନଙ୍କୁ ଲାଇସେନ୍ସ ଏବଂ ଡଙ୍ଗା, ଜାଲ ଇତ୍ୟାଦି ମାଛ ମରା ଉପକରଣ ଯୋଗାଇ ଦିଆଯିବ, ଯାହା ଫଳରେ କି ସେମାନେ ମାଛ ଧରି ବିକ୍ରୀ କରି ନିଜର ପରିବାର ଭରଣପୋଷଣ କରିବା ସଙ୍ଗେ ସଙ୍ଗେ ସୁଷମ ଓ ପୁଷ୍ଟିକର ଖାଦ୍ୟ ମଧ୍ୟ ପାଇ ପାରିବେ ।

## ତାଲିମ ବ୍ୟବସ୍ଥା

ମାଛ ଚାଷ ସମ୍ବନ୍ଧରେ ୧୯୭୩-୭୪ ମସିହାଠାରୁ ଆଦିବାସୀ ଏବଂ ଅଣଆଦିବାସୀମାନଙ୍କୁ ଜୟପୁରଠାରେ ତାଲିମଦେବା ବ୍ୟବସ୍ଥା କରାଯାଇଛି । ପ୍ରତ୍ୟେକ ଚାଷି, ତାଲିମ ପାଇବା ସମୟରେ ମାସିକ ବୃତ୍ତି ଟ ୬୦.୦୦ (ଷାଠିଏ) କରି ପାଆନ୍ତି । ଏହି ତାଲିମ ସମସ୍ତ ୨' ମାସ ରଖାଯାଇଛି । ୧୯୭୩-୭୪ ମସିହାରେ ୬ ଜଣ, ୧୯୭୪-୭୫ ମସିହାରେ ୧୧ ଜଣ ଚାଷି ତାଲିମ ପାଇଛନ୍ତି ଏବଂ ୧୯୭୫-୭୬ ମସିହାରେ ୧୧ ଜଣ ଚାଷି ତାଲିମ ପାଇଛନ୍ତି ।

## ଋଣ ବ୍ୟବସ୍ଥା

ଏହି ଜିଲ୍ଲାରେ ଅନେକ ବ୍ୟକ୍ତି ନିଜର ପୋଖରୀରେ ମାଛ ଚାଷ କରୁଛନ୍ତି । ଏଥିରୁ ଆଶାନୁରୂପ ଫଳ ମିଳୁ ନାହିଁ । କାରଣ ପୁରୁଣା ପୋଖରୀରେ ଶିକାରି ମାଛ ଦଳ ଓ ଗଛ ଇତ୍ୟାଦି ରହିଥିବାରୁ ମାଛ ଯେତି ପରି-ମାଣରେ ଉତ୍ପାଦନ ହେବା କଥା ତାହା ହେଉ ନାହିଁ । ତେଣୁ ସରକାର ମତ୍ସ୍ୟବିଭାଗ ଜରିଆରେ ଋଣ ବ୍ୟବସ୍ଥା କରିଛନ୍ତି । ଏହି ଋଣର ଏକଚତୁର୍ଥାଂଶ ଛାଡ଼ କରି ଦିଆଯାଉଛି । ବାକି ଟଙ୍କା ଚାରି କିସ୍ତିରେ ପରିଶୋଧ କରିବାକୁ ହୁଏ । ଏହି ଋଣ ଟଙ୍କା ଏକର ପ୍ରତି ଟ ୪,୦୦୦.୦୦ (ଚାରି ହଜାର ଟଙ୍କା) ମାତ୍ର ଦିଆଯାଏ । ଏହାଦ୍ୱାରା ଚାଷୀ ଏକକାଳୀନ ଟଙ୍କା ପାଇ ପୋଖରୀରୁ ପଙ୍କ ଉଦ୍ଧାର, ହୁଡ଼ା ମରାମତି, ଶିକାରି ମାଛ ମାରିବା, ଜାଲ୍ କିଣା ଏବଂ ମାଛ ଜାଆଁଳ କିଣିବା ଓ ମାଛ ଜାଆଁଳ ଛାଡ଼ିବା ପରେ ସେମାନଙ୍କୁ ଖାଦ୍ୟଦେବା ଇତ୍ୟାଦି ପାଇଁ ସରକାରଙ୍କ ତରଫରୁ ସୁବିଧା କରାଯାଉଛି । ଏହି ଯୋଜନା ମାଛ ଉତ୍ପାଦନରେ ମଧ୍ୟ ଆଶାନୁରୂପ ହେବ । ୧୯୭୪-୭୫ ମସିହାରେ ଏହି ଜିଲ୍ଲାରେ ମୋଟ ୮ ଜଣଙ୍କୁ ଟ ୧୪,୦୦୦.୦୦ ଋଣ ମଞ୍ଜୁର କରାଯାଇଅଛି । ଏବଂ ଏହି ଋଣ ଟଙ୍କା ମଧ୍ୟରୁ ଟ ୭,୦୦୦.୦୦ ଛାଡ଼କରା-ଯିବ । ଚାଷୀ ତାଙ୍କ ପୋଖରୀରୁ ମାଛମାରି ନେଉଥିବା ଋଣ ଟଙ୍କା ମଧ୍ୟରୁ କେବଳ ବାରଭାଗରୁ ତିନିଭାଗ ଟଙ୍କା କିସ୍ତିରେ ପରିଶୋଧ କରିବେ । ୧୯୭୫-୭୬ ମସିହାରେ ଏହି ଋଣ ଟଙ୍କା ମୋଟ ଟ ୮,୦୦୦.୦୦ ଙ୍କାର ବ୍ୟବସ୍ଥା ରହିଛି ।

## କୃତ୍ରିମ ଉପାୟରେ ମାଛ ଜାଆଁଳ ଉତ୍ପାଦନ

ଚାଷ ଉପଯୋଗୀ ମାଛ ଯଥା:—ରୋହି, ଭାକୁର, ମିରିକାଲି ଓ କଲାବଇଁଶୀର ଗୁଣ୍ଡ ଜାଆଁଳ ବହୁଳ ପରିମାଣରେ ମହାନଦୀରୁ ସଂଗ୍ରହକରି ଦ୍ରୁତଭରି ଅମ୍ଳଜାନ ଦିଆ ବ୍ୟାଗରେ ଅଣାଯାଇ ଜାଆଁଳ ସରବରାହ କେନ୍ଦ୍ର ଜୟପୁର, ମାଲକାନଗିରି, କୋଟପାଡ଼, ଗୁଣୁପୁର ଓ ରାୟଗଡ଼ାର ନର୍ସରୀ ପୋଖରୀରେ ଛଡ଼ାଯାଇ ପ୍ରାୟ ୨୦।୨୫ ଦିନରେ ଜାଆଁଳ ୧" ଠାରୁ ବଡ଼ ହୋଇଥାଆନ୍ତି । ଏହି ଜାଆଁଳଗୁଡ଼ିକ ଗ୍ରାମପଂଚାୟତମାନଙ୍କୁ ବିକ୍ରୀ କରାଯାଏ । ଏହି ନଦୀରୁ ସଂଗ୍ରହ ହୋଇଥିବା ଜାଆଁଳ ଗୁଣ୍ଡରେ ଚାଷଯୋଗ୍ୟ ମାଛର ଜାଆଁଳସହ ଅନ୍ୟ ମାଛର ଜାଆଁଳ ମଧ୍ୟ କିଛି ଆସିଥାଆନ୍ତି ଏବଂ ଅନ୍ୟ ପକ୍ଷରେ ମହାନଦୀରୁ ଏହି ଜିଲ୍ଲାକୁ ଆଣିବାରେ ଗାଡ଼ି ଭଡ଼ା ତଥା ପରିବହନ ଖର୍ଚ୍ଚ ବାବଦକୁ ବହୁତ ଖର୍ଚ୍ଚ ପଡ଼େ । ତେଣୁ ଏହି ମାଛ ସବୁ ନଦୀରେ ଯେପରି ବର୍ଷାପାଣି ଆସିଲେ ଉପରକୁ ଉଠି ଅଣ୍ଡା ଛାଡ଼ନ୍ତି ଏବଂ ସେହି ଅଣ୍ଡାରୁ ଜାଆଁଳ ଫୁଟେ । ପୋଖରୀରେ ସେହିପରି ବର୍ଷା ଦିନରେ ଅଣ୍ଡା ଛାଡ଼ନ୍ତି ନାହିଁ ।

ଏହି ସମୟରେ ଏହି ବଡ଼ ମାଛକୁ ପୋଖରୀରୁ ଧରି କୃତ୍ରିମ ଉପାୟରେ ପିଟୁଇଟାରି ଇଂଜେକସନ୍ ଦେବାଦ୍ୱାରା ମାଛ ଅଣ୍ଡାଛାଡ଼େ ଏବଂ ଅଣ୍ଡିରା ମାଛ ଶୁକ୍ର ଛାଡ଼େ, ଯାହାଫଳରେ ଗଣ୍ଡି ଜାଆଁଳ ଉତ୍ପାଦନ ହୁଏ । ଏହି ଜାଆଁଳ କୃତ୍ରିମ ଉପାୟରେ ଜୟପୁର ଓ ମାଲକାନଗିରି ଜାଆଁଳ ବର୍ଦ୍ଧନ କେନ୍ଦ୍ରରେ କରାଯାଉଅଛି । ଏହାଛଡ଼ା ପଂଚାୟତ ଏବଂ ଘରୋଇ ପୋଖରୀରେ ଭଲ ବଡ଼ ମାଛ ମିଳିଲେ ସେହି ପୋଖରୀରେ ଏହି କୃତ୍ରିମ ଉପାୟରେ ଗଣ୍ଡି ଜାଆଁଳ ଉତ୍ପାଦନ କରାଯାଏ । ଏହାଦ୍ୱାରା ଜାଆଁଳ ଉତ୍ପାଦନ ହେବା ପ୍ରତି ବଡ଼ ମାଛ ସେଟକୁ ଏକହଜାର ବଡ଼ ଜାଆଁଳ ପୋଖରୀ ମାଲିକଙ୍କୁ ବିନା ମୂଲ୍ୟରେ ଦିଆଯାଏ ଏବଂ ବଡ଼ ମାଛ ସବୁ ପୋଖରୀ ମାଲିକଙ୍କୁ ଫେରନ୍ତା ଦିଆଯାଏ ।

## ବିଲାତି ମାଛ ଚାଷ (Cyprinus Carpio)

ଏହି ମାଛ ଆଇଲ୍ୟାଣ୍ଡ ଏବଂ ଇଣ୍ଡୋନେସିଆରେ ମିଳେ । ଏହା ଭାରତକୁ ପ୍ରାୟ ୨୦ ବର୍ଷ ତଳେ ଅଣାଯାଇ ଜାଆଁଳ ଉତ୍ପାଦନ କରାଯାଉଛି । ଏହାକୁ ଓଡ଼ିଶାର ଅନେକ ସ୍ଥାନରେ ବିଲାତି ମାଛ କହନ୍ତି । ଏହା କଳା, ନେଳି, ନାଲି ଇତ୍ୟାଦି ରଙ୍ଗର ଦେଖିବାକୁ ମିଳେ । ପଙ୍କୁଆ ପୋଖରୀରେ ଏହି ମାଛ ଭଲ ବଢ଼ନ୍ତି । ଏପରିକି ବର୍ଷରେ ପ୍ରାୟ ୩ କି: ଗ୍ରା: ପର୍ଯ୍ୟନ୍ତ ବଢ଼ନ୍ତି । ଏହି ମାଛର ବିଶେଷତ୍ୱ ଏହିକି ରୋହି, ଭାକୁର, ମିରିକାଲି ଓ କଲା-ବଇଁଶୀ ମାଛକୁ ପୋଖରୀରୁ ଧରି ଇଂଜେକ୍ସନ ଦେଇ ଯେପରି ଜାଆଁଳ ଉତ୍ପାଦନ କରିବାକୁ ପଡ଼େ, ଏ ମାଛକୁ ସେପରି କିଛି ଦରକାର ହୁଏ ନାହିଁ । ଏହିମାଛ ପ୍ରାୟ ବର୍ଷକୁ ଦୁଇଥର ଜୁଲାଇ, ଅଗଷ୍ଟ ଓ ଡିସେମ୍ବର, ଜାନୁଆରୀ

ମାସରେ ଅଣ୍ଡା ଛାଡ଼ନ୍ତି । ଏହି ଅଣ୍ଡା ପୋଖରୀରେ ଫୁଟି ଜାଆଁଳ ହୁଏ । ଏହି ବିଗହେଡ ମାଛ ରୋହି, ଭାକୁର ତୁଳନାରେ କୌଣସି ଗୁଣରେ କମ ନୁହଁନ୍ତି । ତେଣୁ ଏହି ମାଛର ଚାହିଦା ମଧ୍ୟ ଖୁବ୍ ବେଶି । କୋରାପୁଟ ଜିଲ୍ଲାରେ ଏହି ବିଗହେଡ ମାଛର ଜାଆଁଳ ଜୟପୁର ଏବଂ ମାଲକାନଗିରି ଜାଆଁଳ ସରବରାହ କେନ୍ଦ୍ରରୁ ଯୋଗାଇ ଦିଆଯାଉଛି ।

## ସିଲଭର କାର୍ପ (Silver Carp)

ଏହି ସିଲଭର କାର୍ପ (Silver Carp) ମାଛ ବିଦେଶରୁ ଅଣାଯାଇ ଚାଷ କରାଯାଉଛି । ଏହି ରୋହି, ଭାକୁର ମାଛପରି ଖୁବ୍ ଶୀଘ୍ର ପୋଖରୀରେ ବଢ଼େ । ଏହା ଖାଇବାକୁ ସୁସ୍ୱାଦୁ । ଏହି ମାଛର ଜାଆଁଳ ଦୁଇବର୍ଷ ହେବ ଜୟପୁର ଜଗନ୍ନାଥ ସାଗରରେ ଛଡ଼ା ଯାଇଛି । ଏହି ମାଛକୁ କୃତ୍ରିମ ଉପାୟରେ ଜାଆଁଳ ଉତ୍ପାଦନ କରି ପଞ୍ଚାୟତ ଓ ସର୍ବସାଧାରଣଙ୍କୁ ନିକଟ ଭବିଷ୍ୟତରେ ଯୋଗାଇ ଦିଆଯିବ ।

## ଗ୍ରାସ କାର୍ପ (Grass Carp)

ଏହି ଗ୍ରାସ କାର୍ପ ରୋହି, ଭାକୁର ମାଛପରି ପୋଖରୀରେ ଖୁବ୍ ଶୀଘ୍ର ବଢ଼େ । ପୋଖରୀରେ ଦଳ ହେଲେ ତାକୁ ସଫା କରିବାପାଇଁ ଅନେକ ଟଙ୍କା ଖର୍ଚ୍ଚ ହେବାକୁ ପଡ଼େ କିନ୍ତୁ ଏହି Grass Crap ମାଛ ବିଶେଷ ଦଳ ହେଉଥିବା ପୋଖରୀରେ ନେଇ ଛାଡ଼ିଲେ ଦଳକୁ ଖାଇ ସବୁ ସଫା କରିଦେବେ । ପୋଖରୀରେ ଦଳହେବ ନାହିଁ ଏବଂ ଏହିମାଛ ମଧ୍ୟ ପ୍ରଚୁର ଖାଦ୍ୟ ଖାଇ ଶୀଘ୍ର ବଢ଼ିବେ । ଦଳ ହେଉଥିବା ପୋଖରୀରେ ଏହି ମାଛର ଜାଆଁଳ ଛାଡ଼ିଲେ ଚାଷୀ ପ୍ରଚୁର ପରିମାଣରେ ମାଛ ଉତ୍ପାଦନ କରି ବହୁତ ଲାଭବାନ ହୋଇ ପାରିବେ । ଏହି ମାଛ ପୋଖରୀରେ ଅଣ୍ଡା ଛାଡ଼ି ଜାଆଁଳ ଫୁଟାଇ ପାରନ୍ତି ନାହିଁ । ଏହାଙ୍କୁ କେବଳ କୃତ୍ରିମ ଉପାୟରେ ଜାଆଁଳ ଉତ୍ପାଦନ କରିବାକୁ ପଡ଼େ । ଏହି ମାଛର ଜାଆଁଳ ଗତ ଦୁଇବର୍ଷ ହେବ ଜୟପୁରଠାରେ ମତ୍ସ୍ୟ ବିଭାଗର ଜଗନ୍ନାଥ ସାଗରରେ ଛଡ଼ା ଯାଇଛି । କୃତ୍ରିମ ଉପାୟରେ ଜାଆଁଳ ଉତ୍ପାଦନ କରି ଯୋଗାଇ ଦେବା ବ୍ୟବସ୍ଥା କରାଯିବ ।



# ତଗାବୀ ଋଣ ବଣ୍ଟନ ସଂପର୍କରେ କେତେକ ଜ୍ଞାତବ୍ୟ ବିଷୟ

୧ । ପ୍ରାକୃତିକ ବିପର୍ଯ୍ୟୟ ବ୍ୟତୀତ ଅନ୍ୟ ସମୟରେ ତଗାବୀ ଋଣ ସମବାୟ ବିଭାଗ ବା ବ୍ୟାଙ୍କ ସୂତ୍ରରୁ ଦିଆଯାଏ । ମରୁଡ଼ି, ବନ୍ୟା, ଅଗ୍ନିଜନିତ ଦୁର୍ଘଟଣା କିମ୍ବା ଦୁର୍ଭିକ୍ଷ ସମୟରେ ରାଜସ୍ୱ ବିଭାଗ ତରଫରୁ ଛୋଟ ଛୋଟ ଋଣୀମାନଙ୍କୁ ତଗାବୀ ଋଣ ଦିଆହୁଏ ।

୨ । ବିହନ, ବଳଦ ବା କୃଷି ଉପକରଣ କିଣିବାପାଇଁ ଏବଂ ଅଳ୍ପ ପରିମାଣରେ ବାଲିଚର ଜମି କୃଷି ଉପଯୋଗୀ କରିବାପାଇଁ ଏହି ଋଣ ଦିଆଯାଇଥାଏ ।

୩ । ସ୍ଥାନୀୟ ତହସିଲଦାରମାନେ ଏହି ଋଣ ମଂଜୁର କରନ୍ତି । ବ୍ୟାପକ କ୍ଷତି ଘଟିଲେ ଋଣ ବଣ୍ଟନ ପାଇଁ ଏକାଧିକ ଅତିରିକ୍ତ ତହସିଲଦାର ନିଯୁକ୍ତ ହୁଅନ୍ତି ।

୪ । ଋଣପ୍ରାର୍ଥୀ ସ୍ଥାନୀୟ ତହସିଲଦାରଙ୍କଠାରୁ ବିନାମୂଲ୍ୟରେ ଋଣ ଦରଖାସ୍ତ ଫର୍ମ ନେଇ ଋଣପାଇଁ ଆବେଦନ କରିବେ ଓ ତାହା ପୂରଣ କରି ତହସିଲଦାରଙ୍କନିକଟରେ ଦାଖଲ କରିବେ । ଆବେଦନକାରୀଙ୍କ ସୁବିଧା, ପ୍ରକୃତ ଆବଶ୍ୟକତା, ଆର୍ଥିକ ସ୍ୱଚ୍ଛଳତା, ଋଣ ପରିଶୋଧ କରିବା ସାମର୍ଥ୍ୟ ପ୍ରଭୃତି ବିଷୟ ତନଖି କରାଇ ଉପଯୁକ୍ତ କ୍ଷେତ୍ରରେ ଋଣ ମଂଜୁର କରାଯାଇଥାଏ ଏବଂ ଋଣ ମଂଜୁର କରିଥିବା ଅଧିକାରୀ ତାଙ୍କ ଉପସ୍ଥିତିରେ ଆବେଦନକାରୀଙ୍କୁ ଋଣ ଟଙ୍କା ଦେଇଥାନ୍ତି ।

୫ । ଏହି ଋଣ ମଂଜୁର ପାଇଁ କୌଣସି ସରକାରୀ କର୍ମଚାରୀଙ୍କୁ କୌଣସି ପାଉଣା ଦେବାକୁ ପଡେନାହିଁ । କୌଣସି କର୍ମଚାରୀ ଯେପରି ପାଉଣା ଦାବୀକଲେ ଋଣ ଗ୍ରହୀତା ତାହା ଦେବେ ନାହିଁ ଏବଂ ଏ କଥା ଲିଖିତଭାବରେ ତହସିଲଦାର କିମ୍ବା ସବ୍‌ଡିଭିଜନାଲ ଅଫିସର କିମ୍ବା ପୋଲିସ ଥାନାକୁ ଜଣାଇଦେବେ ।

୬ । ଋଣ ଉପରେ ଶତକଡ଼ା ୧୬·୨୫ ପଇସା ସୁଧ ଦେବାକୁ ପଡେ । ଯେଉଁ ଉଦ୍ଦେଶ୍ୟରେ ଋଣ ଦିଆଯାଇଛି, ସେହି ଉଦ୍ଦେଶ୍ୟରେ ଖର୍ଚ୍ଚ ନ କଲେ କିମ୍ବା କିଛି ଖିଲାପ କଲେ ଅଧିକ ହାରରେ ସୁଧ ଦେବାକୁ ପଡ଼େ ।

୭ । କୌଣସି ଋଣ ଗ୍ରହୀତା ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଋଣ ପରିଶୋଧ ନ କଲେ ସାର୍ଟିଫିକେଟ୍ କେସ୍ ଦ୍ୱାରା ତାହା ଆଦାୟ କରାଯାଏ ଓ ସାର୍ଟିଫିକେଟ୍ ଖର୍ଚ୍ଚ ତାଙ୍କଠାରୁ ଆଦାୟ କରାଯାଏ ।

୮ । ଅତ୍ୟନ୍ତ ଦୁର୍ଦ୍ଦିନରେ ସରକାର ତଗାବୀ ଋଣ ବ୍ୟକ୍ତିବିଶେଷଙ୍କୁ ସାହାଯ୍ୟ ସ୍ୱରୂପ ଦେଉଥିବାରୁ, ଅନୁକୂଳ ପରିସ୍ଥିତି ବେଳେ ଏହି ସରକାରୀ ଦେୟ ପରିଶୋଧ କରିଦେବା ପ୍ରତ୍ୟେକ ନାଗରିକଙ୍କର ପବିତ୍ର କର୍ତ୍ତବ୍ୟ । ଋଣ ପରିଶୋଧ କରିଦେଲେ ଏହି ବାବଦରେ ସରକାରଙ୍କ ପାଖରେ ପାଣ୍ଠି ସଞ୍ଚିତ ହୋଇ ରହେ ଏବଂ ରାଜ୍ୟର କୌଣସି ଅଂଚଳରେ କେତେବେଳେ ପ୍ରାକୃତିକ ବିପର୍ଯ୍ୟୟ ଘଟି ପ୍ରତିକୂଳ ଅବସ୍ଥା ଉପୁଜିଲେ ସରକାରୀ ସାହାଯ୍ୟ ମିଳିବା ସହଜ ହୁଏ ।

# ଢେଙ୍କାନାଳ ଜିଲ୍ଲାର କ୍ଷୁଦ୍ରଚାଷୀ ଉନ୍ନୟନ ସଂସ୍ଥା

ଢେଙ୍କାନାଳ ଜିଲ୍ଲାରେ କ୍ଷୁଦ୍ରଚାଷୀ ଉନ୍ନୟନ ସଂସ୍ଥା ଗଠନ କରାଯିବା ପରେ, ଭାରତ ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ହୋଇଥିବା ମାପକାଠି ଅନୁଯାୟୀ କ୍ଷୁଦ୍ରଚାଷୀମାନଙ୍କ ସଂଖ୍ୟା ନିର୍ଦ୍ଧାରଣ କରାଯାଇଥିଲା । ଯେଉଁ ଚାଷୀମାନେ ୨·୫୦ରୁ ୭·୫୦ ଏକର ଅଣଜଳସେଚିତ ଜମି କିମ୍ବା ୨·୫୦ରୁ ୫ ଏକର ଜଳସେଚିତ ଜମି ନେଇ ଚାଷ କରୁଛନ୍ତି ସେହି ଚାଷୀମାନଙ୍କୁ କ୍ଷୁଦ୍ରଚାଷୀ ରୂପେ ଚିହ୍ନଟ କରାଯାଉଛି ଏବଂ ଏହି ଯୋଜନା ଅନୁଯାୟୀ ସେମାନେ ସମସ୍ତ ପ୍ରକାର ସୁବିଧା ସୁଯୋଗ ପାଇବାପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି । ପରେ ପରେ ଅତିକ୍ଷୁଦ୍ର ଚାଷୀମାନଙ୍କୁ ମଧ୍ୟ ଚିହ୍ନଟ କରାଯାଉଛି । ବର୍ତ୍ତମାନ ସୁଦ୍ଧା ୩୫,୯୧୬ ଜଣ ଚାଷୀଙ୍କୁ ଚିହ୍ନଟ କରାଯାଇସାରିଛି ।

କୃଷି ଋଣ—ଏହି ଜିଲ୍ଲାରେ ଷ୍ଟେଟ ବ୍ୟାଙ୍କ୍ ସମେତ ବିଭିନ୍ନ ବ୍ୟବସାୟିକ ବ୍ୟାଙ୍କ୍‌ର ୧୭ଟି ଶାଖା ରହିଛି । ସମବାୟ ସମିତି ଜରିଆରେ କୃଷକ ମାନଙ୍କର ବହୁଳ ଋଣ ଆବଶ୍ୟକତାକୁ ପୂରଣ କରିବାକୁ ସମ୍ଭବ । ସମବାୟ ସମିତିରେ ନୂତନ ସଭ୍ୟମାନଙ୍କର ନାମ ତାଲିକାଭୁକ୍ତ କରିବାପାଇଁ ଉଦ୍ୟମ କରାଯାଉଛି । ଏହା ଫଳରେ ସେମାନେ ବିଶେଷକରି ସ୍ୱଳ୍ପମିଆଦି ଶସ୍ୟ ଋଣ ନେଇ ପାରିବେ । ଶସ୍ୟ ଋଣ ବ୍ୟବସ୍ଥାକୁ ସୁଗମ କରିବା ନିମନ୍ତେ ସଂସ୍ଥା ପକ୍ଷରୁ ଚେଷ୍ଟା କରାଯାଇଥିଲା ।

ବର୍ତ୍ତମାନ ସୁଦ୍ଧା ୬,୨୦୫ ଜଣ କ୍ଷୁଦ୍ର ଚାଷୀଙ୍କୁ ଶସ୍ୟ ଋଣ ଆକାରରେ ମୋଟ ୫୩·୭୫ ଲକ୍ଷ ଟଙ୍କା ଯୋଗାଇ ଦିଆଯାଇଛି । ଉକ୍ତ ସଂସ୍ଥା ପକ୍ଷରୁ ମଧ୍ୟ କୃଷି ବିଭାଗ, ସାର ବିକ୍ରେତା ଏବଂ ଆର. ସି. ଏମ୍. ଏସ୍.ଙ୍କ ଜରିଆରେ ସାର ତଥା ବହନ ବଣ୍ଟନ ବ୍ୟବସ୍ଥାର ଉନ୍ନତିପାଇଁ ଚେଷ୍ଟା କରୁଛନ୍ତି ।

ଯେଉଁ ବ୍ୟବସାୟିକ ବ୍ୟାଙ୍କଗୁଡ଼ିକ ଧୀର ସ୍ଥିର ଭାବରେ କାର୍ଯ୍ୟକରି ଚାଲିଛନ୍ତି, ସେହି ବ୍ୟାଙ୍କ୍‌ଗୁଡ଼ିକ ବର୍ତ୍ତମାନ ମୋଟ ୨·୨୭ ଲକ୍ଷ ଟଙ୍କା ଶସ୍ୟ ଋଣ ଆକାରରେ କୃଷକ-ମାନଙ୍କୁ ଯୋଗାଇ ଦେଇଛନ୍ତି ।

କୃଷି—ଢେଙ୍କାନାଳ ଜିଲ୍ଲାରେ ଜଳସେଚିତ ଜମିର ହାର ବହୁତ କମ୍ । ଏହା ଫଳରେ ମରୁଡ଼ି ଦେଖା ଦେଉଥାଏ । ଏଣୁ କରି ଉକ୍ତ ସଂସ୍ଥା ପକ୍ଷରୁ ବିସ୍ତୃତ ଭାବେ ବିଚାର କରାଯାଉଛି । ସେଗୁଡ଼ିକ ହେଲା—(୧) ଜଳସେଚନ ଯୋଜନାଗୁଡ଼ିକର ଅନୁକୂଳ ସଦୁପଯୋଗ କରିବା, ବିଶେଷକରି କ୍ଷୁଦ୍ର ଜଳସେଚନ କାମ ଏବଂ ଅଧିକ ଅମଳକ୍ଷମ ଫସଲର ବିସ୍ତାର କରିବା, (୨) ଶୁଖିଲା ଜମିରେ ଫସଲ ପ୍ରବର୍ତ୍ତନ କରିବା ଦିଗରେ ଚେଷ୍ଟା କରିବା ଓ ବିଶେଷକରି ମରୁଡ଼ିକୁ ସହ୍ୟକରି ପାରିବା ଭଳି ଶସ୍ୟ ପ୍ରବର୍ତ୍ତନ କରିବା, (୩) ଡାଲି ଏବଂ ତୈଳବୀଜ ଅର୍ଥକରୀ ଫସଲର ପ୍ରବର୍ତ୍ତନ କରାଯିବା ଆବଶ୍ୟକ, ଏହା ଫଳରେ କୃଷି ପଦ୍ଧତିର କେତେକ ପରିବର୍ତ୍ତନରେ ସଫଳ ହେବ, (୪) ଅର୍ଥକରୀ ଅନୁପାତରେ କୃଷି ଉଦ୍ୟାନର ପ୍ରବର୍ତ୍ତନ କରାଯିବ ।

କୃଷି ବିଭାଗଦ୍ୱାରା ଜଳସେଚିତ ଅଞ୍ଚଳରେ କୃଷିପଦ୍ଧତି ତଥା ପ୍ରସ୍ତୁତ କରାଯାଉଛି । ସଂସ୍ଥା ତରଫରୁ ଆବଶ୍ୟକ ଋଣ ଏବଂ କୃଷି ଉପକରଣ ସମବାୟ ସମିତି ତଥା ବ୍ୟବସାୟିକ ବ୍ୟାଙ୍କ୍ ଜରିଆରେ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଛି । ଏହା ଫଳରେ ନୂତନ ଧରଣର ଶସ୍ୟ ଯଥା:—ଗହମ, ଗ୍ରୀଷ୍ମକାଳୀନ ଚିନାବାଦାମ ଏବଂ ଭିନ୍ନ ଧରଣର ଆଳୁ ଇତ୍ୟାଦି ଫସଲଗୁଡ଼ିକ ସହଜ ପ୍ରବର୍ତ୍ତନ କରାଯାଇ ପାରୁଛି । ଗତ ଦୁଇବର୍ଷ ମଧ୍ୟରେ ଏକର ପିଛା ଅଧିକ ଗହମ ଚାଷକରାଯାଇ ପାରିଛି ।

ଗତବର୍ଷ, ସଂସ୍ଥା ପକ୍ଷରୁ ପରୀକ୍ଷା ମୂଳକ ଭାବେ କେତେକ ଜମିରେ କପାଚାଷ କରାଯାଇଥିଲା ଏବଂ ଏହା ସମ୍ପୂର୍ଣ୍ଣରୂପେ ସଫଳତା ଲାଭକରିଥିଲା । ଚଳିତ ବର୍ଷ ଅନୁକୂଳ ଏବଂ ଢେଙ୍କାନାଳ ଅଞ୍ଚଳରେ କପା ଏବଂ ସୋୟାବିନ ଚାଷର ପ୍ରବର୍ତ୍ତନ କରିବା ନିମନ୍ତେ ଉଦ୍ୟମ କରାଯାଉଛି । ଅଳ୍ପ ଅମଳକ୍ଷମ ଧାନ କିମ୍ବା ଲୋକଙ୍କ ଦାନର ଚାଷ ଅପେକ୍ଷା ସେମାନଙ୍କର ଉଚ୍ଚ ଜମିରେ ଉକ୍ତ ଅର୍ଥକରୀ ଫସଲ ଚାଷ କରିବାପାଇଁ କୃଷକମାନଙ୍କୁ ପ୍ରବର୍ତ୍ତାଉଛନ୍ତି । ଚଳିତ ବର୍ଷ ପ୍ରାୟ ଛଅଶହ ଏକର ଜମିରେ କପା ଏବଂ ୫ ଶହ ଏକର ଜମିରେ ସୋୟାବିନ ଚାଷ କରାଯିବ ।

ଭଣ୍ଡାର—ଗୋଦାମ ସବୁ ନିର୍ମାଣ
ଆର୍. ଏମ୍. ସି. ୧୪ ହଜାର ଟନର
ଗ୍ରାମ୍ୟ ପ୍ରାରମ୍ଭିକ ସହଯୋଗ ସମିତି
ମାଞ୍ଚଳ ଗୋଦାମ ନିର୍ମାଣ କରିବାର
। ଯାହା ହେଉନା କାହିଁକି ଉକ୍ତ
ଏହି ଯୋଜନାର ସୁବିଧା ସୁଯୋଗ

... ଯାଉଛି ।

ଢେଙ୍କାନାଳ ଜିଲ୍ଲାରେ ଯେଉଁ କୃଷକ ବାସ କରନ୍ତି ସେମାନଙ୍କ ମଧ୍ୟରୁ କ୍ଷୁଦ୍ର ଚାଷୀ ଓ ଅତି କ୍ଷୁଦ୍ର ଚାଷୀମାନଙ୍କର ସଂଖ୍ୟା ଶତକଡ଼ା ପ୍ରାୟ ୮୦ ଭାଗ ହେବ । ଜମିଖଣ୍ଡ ଗୁଡ଼ିକର ଛୋଟ ଛୋଟ ହେବାରୁ, ଜଳସେଚନର ଅଭାବ ଏବଂ କୃଷି ସୁବିଧାର ଉନ୍ନତି ଭୂମି ବିଶେଷ ଅନୁଗତ ଘଟି ନାହିଁ । ଯାହା ହେଉନା କାହିଁକି, କ୍ଷୁଦ୍ର ଚାଷୀ ବିକାଶ ସଂସ୍ଥା ଦୁର୍ବଳ ଗୋଷ୍ଠୀ ଶ୍ରେଣୀର ଲୋକମାନଙ୍କ ...

ଉନ ପଠାଇବାକୁ ହେବ । ଏ ଦିଗରେ
ତ୍ରିଦ ଉଦ୍ୟମକୁ ମୁଁ ବ୍ୟକ୍ତିଗତ ସ୍ତରରେ
ସମବାୟ ଭାରତ ସମ୍ପର୍କୀୟ କମିଟି ଓ
ସ୍ତର ନ୍ୟାସନାଲ ଇନଷ୍ଟିଚ୍ୟୁଟ୍ ସବୁତ
ଏବଂ ସେମାନେ ଏ ଦିଗରେ ଆମକୁ
ବୋଲି ପ୍ରସ୍ତୁତ ହୋଇଛନ୍ତି । ତେଣୁ
ମୁଁ ଆହ୍ୱାନ କରୁଛି ଯେ ସେମାନେ
ବ୍ୟବସ୍ଥା ପ୍ରଣାଳୀ ସମ୍ପର୍କରେ ତଦନ୍ତ

କାରବାର ସେମାନେ କରନ୍ତୁ । ଆମ ଲକ୍ଷ୍ୟ ଅନୁସାରୀ ରାଜ୍ୟର ଅନେକ ସ୍ଥାନରେ ଯଥେଷ୍ଟ ସଂଖ୍ୟାରେ ଖାଉଟି ସମବାୟ ସମିତି ସଂଗଠିତ ହୋଇ ପାରିନାହିଁ । ତେଣୁ କେବଳ ପ୍ରାଥମିକ ସମବାୟ ସମିତି ଖାଉଟି ଦ୍ରବ୍ୟ କାରବାର କରିବାପାଇଁ ଆମେ ଚେଷ୍ଟା କରୁଛୁ ଓ ଯୋଜନା ସମସ୍ତ ମଧ୍ୟରେ ଯେପରି ସମିତିଗୁଡ଼ିକର କାର୍ଯ୍ୟଧାରା ମୂଳଧନ ଅଭିବୃଦ୍ଧି କରିବାର ପ୍ରୟୋଜନ ରହୁଛି ।

# ଘଟଣା ପ୍ରବାହ

## ସେପଟେମ୍ବର ୧୯୭୫

୩-୯-୭୫ — ୧୯୭୫ ମସିହା ଓଡ଼ିଶା ମଟର ଟିକସ ବିଲ ରାଷ୍ଟ୍ରପତିଙ୍କ ସ୍ୱୀକୃତି ପାଇଲା । ଭୁବନେଶ୍ୱର ଓ ନିକଟବର୍ତ୍ତୀ ଅଞ୍ଚଳରେ ତିନ ସେକେଣ୍ଡପାଇଁ ଭୂକମ୍ପ ଅନୁଭୂତ ହୋଇଥିଲା ।

୮-୯-୭୫ — ଢେଙ୍କାନାଳ ନିକଟରେ ପଚାଶ ହଜାର ଟାକୁଆ ବିଶିଷ୍ଟ ଏକ ସୂତାକଳ ସ୍ଥାପନଲାଗି ଭାରତ ସରକାର ଅନୁମତି ଦେଲେ ।

୧୧-୯-୭୫ — ଢେଙ୍କାନାଳଠାରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଏକ ମହିଳା କଲେଜ ଉଦ୍‌ଘାଟନ କଲେ ।

୧୨-୯-୭୫ — ରାଜ୍ୟ ସ୍ୱାସ୍ଥ୍ୟ ଓ ନଗର ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୋମନାଥ ରଥ ବ୍ରହ୍ମପୁର କେ. ସି. ଜି. ମେଡିକାଲ କଲେଜରେ ରେଡ଼ିଓ ଥେରାପି ବ୍ଲକର ଶିଳାନ୍ୟାସ କଲେ ।

୧୩-୯-୭୫ — ସୁଲ୍‌ତାଣୀ ନିକଟସ୍ଥ ବଡ଼ ସାଲୁଙ୍କି ପାନୀୟଜଳ ଯୋଗାଣ ଯୋଜନା ରାଜ୍ୟ ସ୍ୱାସ୍ଥ୍ୟ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୋମନାଥ ରଥ ଉଦ୍‌ଘାଟନ କଲେ ।

୧୫-୯-୭୫ — ଓଡ଼ିଶାର ଶିଳ୍ପ ଓ ଯୋଜନା ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା ଯାଜପୁର ସବ୍‌ଡିଭିଜନର କଣିକାପଡ଼ାଠାରେ "ସାଧୁ ଗୌରେଶ୍ୱର" ମହାବିଦ୍ୟାଳୟର ଭିତ୍ତି ସ୍ଥାପନ କଲେ ।

୧୬-୯-୭୫ — ବିଭିନ୍ନ ଉନ୍ନୟନମୂଳକ ଯୋଜନାର ଖର୍ଚ୍ଚ ତୁଲାଇବାପାଇଁ ଓଡ଼ିଶା ସରକାର ୧୩.୨୫ କୋଟି ଟଙ୍କା ଋଣ ଉଠାଇଲେ ।

୧୭-୯-୭୫ — ବନ୍ୟା ବିପନ୍ନ ଅଞ୍ଚଳର କ୍ଷୟକ୍ଷତି ନିରୂପଣ କରିବାପାଇଁ ଶ୍ରୀ ବି. ବି. ସେନ୍‌ଙ୍କ ନେତୃତ୍ୱରେ ଏକ କେନ୍ଦ୍ର ଅନୁଧ୍ୟାନକାରୀ ଦଳଙ୍କ ଓଡ଼ିଶା ପରିଦର୍ଶନ ।

୨୦-୯-୭୫ — ଓଡ଼ିଶା ସରକାର ଶହେ କୋଟି ଟଙ୍କା ବ୍ୟୟ ସମ୍ବଳିତ ଭୂତଳ ଜଳସମ୍ପଦ ବିକାଶ ଯୋଜନା ବିଶ୍ୱ ବ୍ୟାଙ୍କର ପ୍ରତିନିଧିଦଳଙ୍କୁ ଦେଲେ ।

ଓଡ଼ିଶାର ପଞ୍ଚ ଉପକୂଳରେ ଆଲୁମିନିୟମ କାରଖାନା ପ୍ରତିଷ୍ଠା ନିମନ୍ତେ କେନ୍ଦ୍ର ସରକାର ସମ୍ମତ ହେଲେ ।

୨୨-୯-୭୫ — ଓଡ଼ିଶାର ଉପକୂଳବର୍ତ୍ତୀ ସାଗର ଗର୍ଭରୁ ତୈଳ ସମ୍ପଦର ସନ୍ଧାନପାଇଁ ପାରାଦ୍ୱୀପ ନିକଟରେ ଖନନ କାର୍ଯ୍ୟ ଆରମ୍ଭ ହେଲା ।

କେନ୍ଦ୍ର ଜଳସେଚନ ଓ କୃଷି ଉପମନ୍ତ୍ରୀ ଶ୍ରୀ କେ. ଏନ୍. ସିଂହଙ୍କ ଓଡ଼ିଶା ପରିଦର୍ଶନ ।

ମହାଜନ କାରବାର ନିୟନ୍ତ୍ରଣ ଉଦ୍ଦେଶ୍ୟରେ ୧୯୩୯ ମସିହାର ମହାଜନୀ ଆଇନ ସଂଶୋଧନ କରି ଓଡ଼ିଶା ସରକାର ଏକ ଅର୍ଡିନାନ୍ସ ଜାରି କଲେ ।

୨୩-୯-୭୫ ବଲାଙ୍ଗୀର ଜିଲ୍ଲାର ଭୁଙ୍ଗୁରୁପଲ୍ଲୀଠାରେ ଘରୋଇ ଉଦ୍ୟମରେ ଏକ କାଗଜକଲ ପ୍ରତିଷ୍ଠା ଲାଗି କେନ୍ଦ୍ର ସରକାର ଅନୁମତି ଦେଲେ ।

ବାଲିମେଳା ଯୋଜନା ବାବଦ ଅତିରିକ୍ତ ଖର୍ଚ୍ଚ ବହନ କରିବାପାଇଁ ଆନ୍ଧ୍ର ସରକାର ସମ୍ମତ ହେଲେ ।

କେନ୍ଦ୍ର ସ୍ୱାସ୍ଥ୍ୟ ଉପମନ୍ତ୍ରୀ ଶ୍ରୀ ଏ. କେ. ଏମ୍. ଇଶାକ୍ ଓଡ଼ିଶାର ବନ୍ୟାବିପନ୍ନ ଅଞ୍ଚଳ ପରିଦର୍ଶନ କଲେ ।

୨୫-୯-୭୫ ରାଷ୍ଟ୍ରପତି ଶ୍ରୀ ଫକ୍ରୁଦ୍ଦିନ ଅଲ୍ଲୀ ଅହମ୍ମଦ ବୋନସ ଆଇନ ସଂଶୋଧନକରି ଏକ ଅର୍ଡ଼ିନାନ୍ସ ଜାରି କଲେ ।

ଓଡ଼ିଶାରେ ଏକ ଆଜବେଷ୍ଟସ ଚଦର ତିଆରି କାରଖାନା ପ୍ରତିଷ୍ଠା ନିମନ୍ତେ କେନ୍ଦ୍ର ସରକାର ଅନୁମତି ଦେଲେ ।

୨୭-୯-୭୫ ଦେଶରେ ୫ ଟି ଗ୍ରାମ୍ୟ ବ୍ୟାଙ୍କ ପ୍ରତିଷ୍ଠାପାଇଁ ରାଷ୍ଟ୍ରପତି ଶ୍ରୀ ଫକ୍ରୁଦ୍ଦିନ ଅଲ୍ଲୀ ଅହମ୍ମଦ ଏକ ଅର୍ଡ଼ିନାନ୍ସ ଜାରି କଲେ ।

ଓଡ଼ିଶାର ଜଳସେଚନ ଓ ବିଦ୍ୟୁତ୍ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦିବ୍ୟଲୋଚନ ଶେଖର ଦେଓ ପୁରୀ ଜିଲ୍ଲା ସାଟିଆ ବ୍ଲକର "ସାଗର" କ୍ଷୁଦ୍ର ଜଳସେଚନ ଯୋଜନା ଉଦ୍‌ଘାଟନ କଲେ ।

ଉଭୟ ପୁରୁଷ ଓ ମହିଳାମାନଙ୍କୁ ସମାନ କାମପାଇଁ ସମାନ ମଜୁରି ଦିଆଯିବା ଲାଗି ରାଷ୍ଟ୍ରପତି ଶ୍ରୀ ଫକ୍ରୁଦ୍ଦିନ ଅଲ୍ଲୀ ଅହମ୍ମଦ ଏକ ଅର୍ଡ଼ିନାନ୍ସ ଜାରି କଲେ ।

୨୭-୯-୭୫ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓଡ଼ିଶାର ବନ୍ୟା ବିପନ୍ନ ଅଞ୍ଚଳ ଆକାଶ ମାର୍ଗରୁ ପରିଦର୍ଶନ କଲେ ।

---

## କରମଣ୍ଡଳ ସାର କମ୍ପାନୀ ତରଫରୁ ବନ୍ୟାକ୍ଲିଷ୍ଟ କୃଷୀମାନଙ୍କ ପାଇଁ ୧୦ ଟନ ସାର ଦାନ

ଓଡ଼ିଶାର ବନ୍ୟାକ୍ଲିଷ୍ଟ କୃଷୀମାନଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଆନ୍ଧ୍ର ପ୍ରଦେଶର କରମଣ୍ଡଳ ସାର କମ୍ପାନୀ ରାଜ୍ୟ କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ଲକ୍ଷ୍ମଣ ମଲ୍ଲିକଙ୍କ ଜରିଆରେ ୧୦ ଟନ ଗ୍ରୋମୋର ସାର ଦାନ କରିଛନ୍ତି । ଏହାର ଆନୁମାନିକ ମୂଲ୍ୟ ୩୦ହଜାର ଟଙ୍କା ହେବ ।

କଟକ ଜିଲ୍ଲା ବନ୍ୟାଗ୍ରସ୍ତ ଅଞ୍ଚଳର କୃଷୀ ବିଶେଷତଃ ଉଚ୍ଚ ଜମିରେ ଯେଉଁମାନେ ମାଣ୍ଡିଆ ଚାଷ କରିବେ ଏବଂ ବାଲେଶ୍ୱର ଜିଲ୍ଲାରେ ଯେଉଁମାନେ ଗହମ ଓ ସୋରିଷ ଚାଷ କରିବେ, ସେମାନଙ୍କୁ ଏହି ସାର କମ ମୂଲ୍ୟରେ ଯୋଗାଇ ଦିଆଯିବ । ବନ୍ୟାକ୍ଲିଷ୍ଟ କ୍ଷୁଦ୍ର କୃଷୀମାନଙ୍କୁ ଏଥିପାଇଁ ଅଗ୍ରାଧିକାର ଭିତ୍ତିରେ ସାହାଯ୍ୟ କରିବାକୁ ସ୍ଥିର କରାଯାଇଛି । ଏହିପରି କୃଷୀମାନଙ୍କୁ ତୁରନ୍ତ ଋଣ ଅନୁଦାନ ପଦକ୍ଷେପ ନେବା ପାଇଁ କୃଷି ବିଭାଗକୁ ନିର୍ଦ୍ଦେଶ ଦିଆଯାଇଛି ।

---

ସମବାୟ

ମାଧ୍ୟମରେ ହିଁ

ଆଜିର ସମସ୍ତ ସମସ୍ୟାର

ସମାଧାନ

✦ ମଧୁର ଜଳରେ କିମ୍ବା ସମୁଦ୍ରରେ ମାଛ ଧରୁଥିବା ମତ୍ସ୍ୟଜୀବୀମାନେ ଅନାୟାସରେ ଡଙ୍ଗା ଓ ଜାଲର ଅଧିକାରୀ ହୋଇ ପାରିବେ ।

ଏବଂ

✦ ମତ୍ସ୍ୟଜୀବୀ ସମବାୟ ସମିତି ଜରିଆରେ ଯାନ୍ତ୍ରିକ ମାଛଧରା ଡଙ୍ଗା ଏବଂ ଉନ୍ନତ ମାଛଧରା ଉପକରଣ ମଧ୍ୟ ମିଳିପାରିବ ।

ସେଥିପାଇଁ

✦ ଜାତୀୟକରଣ ବ୍ୟାଙ୍କ୍ ଏବଂ ଅର୍ଥଲଗାଣ ସଂସ୍ଥାମାନଙ୍କରୁ ଋଣ ଜରିଆରେ ଆର୍ଥିକ ସାହାଯ୍ୟ ମିଳୁଛି ଶତକଡ଼ା ୨୫ ଭାଗ ରିହାତି ବ୍ୟବସ୍ଥା ମଧ୍ୟ ରହିଛି ।

ତୁରନ୍ତ ନିକଟତମ ଜିଲ୍ଲା ମତ୍ସ୍ୟ ଅଧିକାରୀଙ୍କ ସହିତ ଯୋଗାଯୋଗ କରନ୍ତୁ ।

ଓଡ଼ିଶା ମତ୍ସ୍ୟ ବିଭାଗ, କଟକ-୭୫୩୦୦୭

OGP–M. P. VIII-Home (P. R.)-92–5,000—1-11-1975



ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଓଡ଼ିଶା ଆଗମନ ବେଳେ ଚାରବାଟିଆଠାରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ସ୍ୱାଗତ ଜ୍ଞାପନ (ସେପ୍ଟେମ୍ବର ୨୭, ୧୯୭୪) ।



ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ କୋଣାର୍କ ପରିଦର୍ଶନ କାଳରେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଓଡ଼ିଶାର ପର୍ଯ୍ୟଟନ କେନ୍ଦ୍ରଗୁଡ଼ିକର ଚିତ୍ର ଥିବା ଏକ ଫଟୋ ଆଲବମ୍ ତାଙ୍କୁ ଉପହାର ଦେଉଛନ୍ତି ।



ଓଡ଼ିଶାର ରାଜ୍ୟପାଳ ଶ୍ରୀ ଅକବର ଅଲ୍ଲୀ ଖାଁ, ସ୍ୱାସ୍ଥ୍ୟ ଓ ପରିବାର ନିୟୋଜନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୋମନାଥ ରଥ ଏବଂ ପୂର୍ବ ନଗରପାଳ ଶ୍ରୀ ଅମୂଲ୍ୟଚନ୍ଦ୍ର ନନ୍ଦ ପୁରୀ ଦୋଳିଆ ସାହି ନିକଟସ୍ଥ ହରିଜନ ବସ୍ତି ସଫା କରୁଛନ୍ତି ।

Vol. XXXII No. 4 UTKAL PRASANGA Regd. No. O-247
Licence No. C. R. N. P. 5—Licensed to post without pre-payment



୧୯୭୫ ଅକ୍ଟୋବର ୨୦ ତାରିଖ ଦିନ ଭୁବନେଶ୍ୱର ରାଜଭବନଠାରେ ଶ୍ରୀ ରାମଚନ୍ଦ୍ର ଉଲକା ଏବଂ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କୁ କ୍ୟାବିନେଟ୍ ମନ୍ତ୍ରୀରୂପେ ରାଜ୍ୟପାଳ ଶପଥ ପାଠ କରାଉଛନ୍ତି ।



ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ୧୯୭୫ ଅକ୍ଟୋବର ୯ ତାରିଖ ଦିନ କୁଷ୍ଠରୋଗୀମାନଙ୍କ ଥଇଥାନ ନିମନ୍ତେ ମଦର୍ ଟେରେସାଙ୍କ ହସ୍ତରେ ୩୪ ଏକର ଜମିର ପଟ୍ଟା ପ୍ରଦାନ କରୁଛନ୍ତି ।

Printed at Orissa Government Press, Cuttack-10